# ସପ୍ତ ଗୌରବ

## ( ଜୀବନ : ପ୍ରତିଭା )

ସଂକଳନ :

ଉତ୍କଳ ପାଠକ ସଂସଦ

ପରିବେଷକ :



ଓଡ଼ିଶା ବୁକ୍ ଷ୍ଟୋର

# ସପ୍ତ ଗୌରବ

( ଜୀବନ : ପ୍ରବନ୍ଧ )

ସଂକଳନ :
**ଉତ୍କଳ ପାଠକ ସଂସଦ**
ସୁଜାତା ଭବନ, କଳିଙ୍ଗ ଲେନ୍
ମହତାବ ରୋଡ୍, କଟକ-୧୨

ସଂପାଦକ :
ପଠାଣି ପଟ୍ଟନାୟକ
ଡଃ ବ୍ରଜମୋହନ ମହାନ୍ତି
ଶ୍ରୀ ଯମେଶ୍ବର ତ୍ରିପାଠୀ
ଶ୍ରୀ ପ୍ରସନ୍ନ କୁମାର ଦାଶ
ଶ୍ରୀ ତୀର୍ଥାନନ୍ଦ ମିଶ୍ର
ଶ୍ରୀ ବୀରକିଶୋର ସାହୁ

ପ୍ରକାଶ କାଳ :
ମାର୍ଚ୍ଚ ୧୪ ତାରିଖ, ୧୯୯୩

ପ୍ରଚ୍ଛଦ ଶିଳ୍ପୀ :
**ଶ୍ରୀ ସୁନାମଣି ସାମଲ**

ପ୍ରାପ୍ତିସ୍ଥାନ :
**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦ ବିହାରୀ, କଟକ-୭୫୩୦୦୨

ମୁଦ୍ରଣ :
**ରେଖା ପ୍ରେସ**
ବାମ୍ଫି ସାହି, କଟକ-୭୫୩୦୦୯

ମୂଲ୍ୟ :
କୋଡ଼ିଏ ଟଙ୍କା ମାତ୍ର

**SAPTA GAURABA**
( A Biographical Book )

Compiled by :
UTKAL PATHAK SAMSAD
Sujata Bhawan, Kalinga Lane
Mahtab Road, Cuttack-12

EDITORS :
Pathani Pattanaik
Dr. Braja Mohan Mohanty
Sri Jameswar Tripathy
Sri Prasanna Kumar Dash
Sri Tirthananda Misra
Sri Bira Kishore Sahoo

Published on :
14th March, 1993

Artist :
**Sri Sunamani Samal**

Available at :
**ORISSA BOOK STORE**
Binodbehari CTC.-753002

Printed at :
**REKHA PRESS**
Bamphi Sahi, Cuttack-9

Price : **Rs. 20-00**
(Rupees Twenty Only)

# ସୂଚୀପତ୍ର





ଅଗଣିତ ପାଠକଙ୍କ ହସ୍ତରେ :
"ଉତ୍କଳ ପାଠକ ସଂସଦ"ର
ସଭ୍ୟବୃନ୍ଦ ।

# ଆମର ଆଭିମୁଖ୍ୟ

୧୯୭୦ ମସିହାରେ ଜାତିସଂଘ ପକ୍ଷରୁ ଆୟୋଜିତ ଅନ୍ତର୍ଜାତୀୟ ପୁସ୍ତକ ବର୍ଷ (National Book Year) ଅବସରରେ ଜନ୍ମଲାଭ କରିଥିଲା ଉତ୍କଳ ପାଠକ ସଂସଦ । ଏହି ବର୍ଷଠାରୁ ପୁସ୍ତକ ପ୍ରଚାର ଉଦ୍ଦେଶ୍ୟରେ ଆଲୋଚନାଚକ୍ର, ପୁସ୍ତକ ପ୍ରଦର୍ଶନୀ, ବୈଷୟିକ ପ୍ରଦର୍ଶନୀ, ବୈଷୟିକ ଆଲୋଚନା, କବି ସମ୍ମେଳନ, ହାସ୍ୟରସାତ୍ମକ କାର୍ଯ୍ୟକ୍ରମ, ଛାତ୍ରଛାତ୍ରୀଙ୍କ ମଧ୍ୟରେ ବିଭିନ୍ନ ପ୍ରତିଯୋଗିତା, ଲୋକବାଦ୍ୟ, ଓଡ଼ିଶୀ ସଙ୍ଗୀତ, ଓଡ଼ିଶୀ ନୃତ୍ୟର ପ୍ରସାର, ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନ ପ୍ରଦର୍ଶନ, ସେମାନଙ୍କ ଜୀବନୀ ଉପରେ ଆଧାରିତ ପୁସ୍ତକ ପ୍ରକାଶନ ଏବଂ ଭାଷା, ସଂସ୍କୃତି ଓ ସମାଜର କଲ୍ୟାଣ ଉଦ୍ଦେଶ୍ୟରେ ବିଭିନ୍ନ ବିଷୟବସ୍ତୁ ଉପରେ ବିଶେଷ ସଂକଳନ ପ୍ରକାଶ କରାଯାଉଅଛି । ଏତଦ୍‌ବ୍ୟତୀତ ଗ୍ରାମାଞ୍ଚଳରେ ଉଦ୍‌ଘାଟନ ଉତ୍ସବର ଆୟୋଜନ କରି ନୂତନ ସାହିତ୍ୟିକ ସୃଷ୍ଟି ଓ ବୈଷୟିକ ଆଲୋଚନାଦ୍ୱାରା ଲୋକମାନଙ୍କର ବୌଦ୍ଧିକ ବିକାଶ ଦିଗରେ ସାହାଯ୍ୟ କରିବା ପାଇଁ ମଧ୍ୟ ସଂସଦ ପଦକ୍ଷେପ ନେବାକୁ ଯତ୍ନ କରୁଛି ।

ଉତ୍କଳ ପାଠକ ସଂସଦ ବିଶ୍ୱାସ କରେ ଯେ—ଏ ଜାତିର ଶତ ଶତ ପ୍ରତିଭାଧର ବ୍ୟକ୍ତି ସ୍ୱ-ସ୍ୱ କ୍ଷେତ୍ରରେ ସୁପ୍ରତିଷ୍ଠିତ । କଳା, ବିଜ୍ଞାନ, ସାହିତ୍ୟ, ସଂସ୍କୃତି, ଶିଳ୍ପ, ଭାସ୍କର୍ଯ୍ୟ ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ ସେମାନଙ୍କର ସ୍ୱାକ୍ଷର

ସୁସ୍ପଷ୍ଟ । ସେମାନଙ୍କ ମଧ୍ୟରୁ କେତେକ ହୁଏତ ସମାଜରେ ସ୍ୱୀକୃତ, ପ୍ରଶଂସିତ, ମାତ୍ର ବିଭିନ୍ନ କାରଣରୁ ଆହୁରି ଅନେକ ଉପଯୁକ୍ତ ସମ୍ମାନ ଲାଭରୁ ବଞ୍ଚିତ ।

କିନ୍ତୁ ମନେ ରଖିବାକୁ ହେବ ଯେ—ପ୍ରତିଭା ପୂଜା ଗୋଟିଏ ଜାତିର ସାଂସ୍କୃତିକ ଜୀବନକୁ ବଳିଷ୍ଠ ତଥା ଋଦ୍ଧିମନ୍ତ କରିଥାଏ । ଓଡ଼ିଶାରେ ଅନେକ କୃତୀ ସନ୍ତାନ ଜନ୍ମଗ୍ରହଣ କରି ବିଭିନ୍ନ କ୍ଷେତ୍ରରେ ଆନ୍ତର୍ଜାତିକ ସମ୍ମାନର ଅଧିକାରୀ ହୋଇ ପାରିଥିଲେ ସୁଦ୍ଧା, ସେମାନଙ୍କର ଜୀବନୀ ଏବଂ କୃତି ଯଥାଯଥ ଭାବରେ ସଂଗୃହୀତ ହୋଇ ପାରିନାହିଁ ।

ଉତ୍କଳ ପାଠକ ସଂସଦ ପୂଜ୍ୟ ପୂଜାର ପରମ୍ପରା ରକ୍ଷାକରି ଜୀବିତ ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନ ଦେବାରେ କିଞ୍ଚିତ୍ ପ୍ରୟାସ କରିଛି । ଏହି କାର୍ଯ୍ୟକ୍ରମ ଅନୁସାରେ ୧୯୭୦ ମସିହା ଠାରୁ ପ୍ରତ୍ୟେକ ବର୍ଷ ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନିତ କରାଯାଇଛି । ଏହି ବ୍ୟକ୍ତିମାନଙ୍କ ମଧ୍ୟରେ ଅଛନ୍ତି ସର୍ବଶ୍ରୀ କାହ୍ନୁଚରଣ ମହାନ୍ତି, ରାଧାମୋହନ ଗଡ଼ନାୟକ, ରାଜକିଶୋର ପଟ୍ଟନାୟକ, ତାରିଣୀଚରଣ ପାତ୍ର, କେଳୁଚରଣ ମହାପାତ୍ର, ଭଗବାନ ପତି, ଡକ୍ଟର କୁଞ୍ଜବିହାରୀ ଦାଶ, ଶ୍ରୀମତୀ ସରଳା ଦେବୀ, ଶ୍ରୀ ଶ୍ରୀଧର ମହାପାତ୍ର, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଡକ୍ଟର ମିନତୀ ମିଶ୍ର, ଶ୍ରୀ ସାମୁଏଲ ସାହୁ (ବାବି) ଓ ଅନ୍ୟ କେତେଜଣ ବିଭିନ୍ନ କ୍ଷେତ୍ରରେ ସ୍ମରଣୀୟ ବ୍ୟକ୍ତିମାନଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଅଛି । ପ୍ରଥମ ୫ବର୍ଷରେ କେବଳ ମାନପତ୍ର ଦେଇ ଏହି ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନିତ କରିବାରେ ଏ ସଂସଦ ସନ୍ତୁଷ୍ଟ ହୋଇ ପାରିଲା ନାହିଁ । ସେଥିପାଇଁ ପରେ ପ୍ରତ୍ୟେକବର୍ଷ ପର୍ଯ୍ୟାୟକ୍ରମେ ମହାନ୍ ବ୍ୟକ୍ତିମାନଙ୍କ ମଧ୍ୟରୁ ୭ଜଣଙ୍କୁ ସମ୍ମାନିତ କରି ସେମାନଙ୍କ ଜୀବନଚରିତ ଓ କାର୍ଯ୍ୟକଳାପକୁ ପୁସ୍ତକ ଆକାରରେ ପ୍ରକାଶ କରି ଆସୁଅଛି ।

ଏହି ସଂସଦ ତରଫରୁ ଏ ପର୍ଯ୍ୟନ୍ତ ୧୭ ଗୋଟି ଜୀବନୀ ସଂକଳନ ପ୍ରକାଶ ପାଇଲାଣି । ଯଥା—

(୧) ପ୍ରତିଭା ପରିଚୟ ୧୯୭୬, (୨) ସପ୍ତରଶ୍ମି ୧୯୭୭, (୩) ସପ୍ତଶିଖା ୧୯୭୮, (୪) ସପ୍ତଦୀପ ୧୯୭୯, (୫) ସପ୍ତଶ୍ରୀ ୧୯୮୦, (୬) ସପ୍ତଜ୍ୟୋତି ୧୯୮୧, (୭) ସପ୍ତପୁଷ୍ପ ୧୯୮୨, (୮) ସପ୍ତରାଗ ୧୯୮୩, (୯)

ସପ୍ତସୁମନ ୧୯୮୪, (୧୦) ସପ୍ତସ୍ତବକ ୧୯୮୫, (୧୧) ସପ୍ତତରଙ୍ଗ ୧୯୮୬, (୧୨) ସପ୍ତପ୍ରଭା ୧୯୮୭, (୧୨) ସପ୍ତଧାରା ୧୯୮୮, (୧୪) ସପ୍ତଶାଖା ୧୯୮୯, (୧୫) ସପ୍ତତାରକା ୧୯୯୦, (୧୬) ସପ୍ତସୌରଭ ୧୯୯୧, (୧୭) ସପ୍ତସାଧକ ୧୯୯୨ ।

୧୯୭୬ରେ 'ପ୍ରତିଭା ପରିଚୟ' ପୁସ୍ତକରେ ସାହିତ୍ୟସାଧକ କାଳନ୍ଦୀ ଚରଣ ପାଣିଗ୍ରାହୀ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ସାହିତ୍ୟିକ ଓ ସାମ୍ବାଦିକ ଉଦୟନାଥ ଷଡ଼ଙ୍ଗୀ, ନାଟ୍ୟକାର କାର୍ତ୍ତିକ କୁମାର ଘୋଷ, ମାଷ୍ଟର ରାମଚନ୍ଦ୍ର ମାଣିଆ, ସ୍ୱରସାଧକ ନିମାଇଁ ଚରଣ ହରିଚନ୍ଦନ, ପୁସ୍ତକ ପ୍ରକାଶକ ଅନନ୍ତ ମିଶ୍ରଙ୍କ ଜୀବନୀ ଓ କୃତି ଆଲୋଚିତ ।

୧୯୭୭ରେ ସଙ୍କଳିତ 'ସପ୍ତରଶ୍ମି' ପୁସ୍ତକରେ ଓଡ଼ିଶାର ପ୍ରଖ୍ୟାତ ସାମ୍ବାଦିକ ଡକ୍ଟର ରାଧାନାଥ ରଥ, ଔପନ୍ୟାସିକ ଗୋପୀନାଥ ମହାନ୍ତି, ଚିତ୍ରଶିଳ୍ପୀ ବିପିନବିହାରୀ ଚୌଧୁରୀ, ଅନୁବାଦକ ଲାଲ ନଗେନ୍ଦ୍ର କୁମାର ରାୟ, ସଙ୍ଗୀତ ସାଧକ ବାଳକୃଷ୍ଣ ଦାଶ, ନାଟ୍ୟଭୂଷଣ ସତ୍ୟନାରାୟଣ ରାଜଗୁରୁ ଏବଂ ପୁସ୍ତକ ପ୍ରକାଶକ ଗୋକୁଳଚନ୍ଦ୍ର କରଙ୍କର ଜୀବନୀ ଓ କୃତି ପ୍ରକାଶିତ ।

୧୯୭୮ରେ ପ୍ରକାଶିତ 'ସପ୍ତଶିଖା' ପୁସ୍ତକରେ ଅଭିନେତା ଧଣ୍ଡିନ୍ ଦାସ, ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ବିପ୍ଳବୀ ରାଜକୃଷ୍ଣ ବୋଷ, ଚିତ୍ରଶିଳ୍ପୀ ମୁରଲୀଧର ଟାଲି, ସାମ୍ବାଦିକ ଶ୍ରୀହର୍ଷ ମିଶ୍ର, କଥା ସାହିତ୍ୟସାଧକ ସୁରେନ୍ଦ୍ର ମହାନ୍ତି, ସଙ୍ଗୀତଜ୍ଞ ଶ୍ୟାମସୁନ୍ଦର ଧୀର ଏବଂ ରୁଚିବନ୍ତ ପ୍ରକାଶକ ଗୋବିନ୍ଦ ଚରଣ ପାତ୍ରଙ୍କ ସାଧନାପୂର୍ଣ୍ଣ ଜୀବନୀ ସନ୍ନିବିଷ୍ଟ ।

୧୯୭୯ର 'ସପ୍ତପ୍ରଦୀପ' ପୁସ୍ତକରେ ଛଉନୃତ୍ୟଗୁରୁ ଚନ୍ଦ୍ରଶେଖର ଭଞ୍ଜ, ଚିତ୍ରଶିଳ୍ପୀ ହରିଶରଣ ମହାପାତ୍ର, ସଙ୍ଗୀତସାଧକ ଜଗବନ୍ଧୁ ସାହୁ, ଚଳଚ୍ଚିତ୍ରାଞ୍ଚଳ କବି ଜଗନ୍ନାଥ ଦେବବର୍ମା, ଜନସେବୀ ନିତ୍ୟାନନ୍ଦ କାନୁନ୍‌ଗୋ, ଶିକ୍ଷାବିତ୍ ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ସାରସ୍ୱତ ସାଧକ ଶ୍ରଦ୍ଧାକର ସୁପକାରଙ୍କ କୃତି ବର୍ଣ୍ଣିତ ।

୧୯୮୦ 'ସପ୍ତଶ୍ରୀ' ପୁସ୍ତକରେ ସାହିତ୍ୟସେବୀ ଡକ୍ଟର ହରେକୃଷ୍ଣ ମହତାବ, ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ନାଟ୍ୟକାର

ଶ୍ରୀ ରାମଚନ୍ଦ୍ର ମିଶ୍ର, ସାହିତ୍ୟିକ ଶ୍ରୀ ରାମପ୍ରସାଦ ସିଂହ, ବେଦାନ୍ତାଳଙ୍କାର ପଣ୍ଡିତ ଗଣେଶ୍ୱର ରଥ, ଗାୟକରତ୍ନ ବୈଦ୍ୟନାଥ ଶର୍ମା, ପାଲାଗାୟକ ଶ୍ରୀ ପରମାନନ୍ଦ ଶରଣଙ୍କ ଜୀବନୀ ଉପରେ ଆଲୋକପାତ କରାଯାଇଅଛି ।

୧୯୮୧ 'ସପ୍ତଜ୍ୟୋତି' ସଙ୍କଳନରେ ନାଟ୍ୟକାର ଗୋପାଳ ଛୋଟରାୟ, ସମାଜସେବୀ ନନ୍ଦକିଶୋର ଦାସ, ଇତିହାସବେତ୍ତା ଡକ୍ଟର ନବୀନକୁମାର ସାହୁ, ଗବେଷକ ସୁଧାକର ପଟ୍ଟନାୟକ, ପ୍ରତ୍ନତତ୍ତ୍ୱବିଦ୍ କେଦାରନାଥ ମହାପାତ୍ର, ଶିଳ୍ପୀଗୁରୁ ଜଗନ୍ନାଥ ମହାପାତ୍ର ଓ ନୃତ୍ୟଗୁରୁ ଭଗବାନ ସାହୁଙ୍କ କୃତି ସ୍ଥାନ ପାଇଛି ।

୧୯୮୨ର 'ସପ୍ତପୁଷ୍ପ' ସଂକଳନ ରସିକରାଜ କବି ଫଗୁରାନନ୍ଦ, ପାଲାଗାୟକ ନିରଞ୍ଜନ କର, ମଞ୍ଚଗୁରୁ ଦୁର୍ଲ୍ଲଭଚନ୍ଦ୍ର ସିଂହ, ଶିଳ୍ପୀ ଶିରୋମଣି ଶ୍ରୀଧର ମହାପାତ୍ର, ବାଣୀ ବରପୁତ୍ର ରାମକୃଷ୍ଣ ନନ୍ଦ, ଚଳଚ୍ଚିତ୍ରକ କବିରାଜ ଅନନ୍ତ ତ୍ରିପାଠୀ ଶର୍ମା ଓ ସମାଜସେବକ ପଦ୍ମଶ୍ରୀ ମୋହନ ନାୟକଙ୍କ ଜୀବନୀ ଓ ସାଧନା ଉପରେ ଆଧାରିତ ।

୧୯୮୩ 'ସପ୍ତସ୍ୱର' ସଂକଳନରେ ଭାଷାବିଜ୍ଞାନୀ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, ଜନସେବୀ ଲମ୍ବୋଦର ପାଣିଗ୍ରାହୀ, କବି ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ଉତ୍କଳବନ୍ଧୁ ପି. ଭି. କୃଷ୍ଣମୂର୍ତ୍ତି, ସୃଜନଶୀଳ ନାଟ୍ୟକାର ମନୋରଞ୍ଜନ ଦାସ, ସ୍ଥାପତ୍ୟଶିଳ୍ପୀ ଭୁବନେଶ୍ୱର ମହାପାତ୍ର ଓ ଛଉନୃତ୍ୟ ଗୁରୁ ଅନନ୍ତ ଚରଣ ସାଏଙ୍କ ଜୀବନୀ ଓ କୃତି ଉପରେ ଆଲୋକପାତ କରାଯାଇଛି ।

୧୯୮୪ର 'ସପ୍ତସୁମନ' ସଂକଳନରେ ସାହିତ୍ୟସାଧକ ଡକ୍ଟର ଭୁବନେଶ୍ୱର ବେହେରା, ନାଟ୍ୟକାର ଭଞ୍ଜକିଶୋର ପଟ୍ଟନାୟକ, ଜନ-ସେବକ ଡାକ୍ତର ଶରତଚନ୍ଦ୍ର ମିଶ୍ର, ମଞ୍ଚଶ୍ରୀ ସତ୍ୟନାରାୟଣ ପଣ୍ଡା, ସଙ୍ଗୀତଗୁରୁ ଶ୍ରୀ କ୍ଷିତୀଶଚନ୍ଦ୍ର ମୈତ୍ର, ଗବେଷକ ଡଃ ନଟବର ସାମନ୍ତରାୟ, ଛଉନୃତ୍ୟ ଗୁରୁ ପଦ୍ମଶ୍ରୀ କେଦାରନାଥ ସାହୁଙ୍କ ଜୀବନୀ ଓ କୃତି ସ୍ଥାନ ପାଇଛି ।

୧୯୮୫ ମସିହାରେ 'ସପ୍ତସ୍ତବକ' ଜୀବନୀ ପୁସ୍ତକରେ ସଙ୍ଗଠକ ବାବୁଲାଲ ଦୋଶୀ, କଳାକାର ବାଞ୍ଛାନିଧି ଶତପଥୀ, ସାହିତ୍ୟିକ ଅନନ୍ତ ପ୍ରସାଦ ପଣ୍ଡା, ଗବେଷକ ବିନୋଦ କାନୁନ୍‌ଗୋ, ସଙ୍ଗୀତସାଧକ ଭୁବନେଶ୍ୱର ମିଶ୍ର, ଚିତ୍ରଶିଳ୍ପୀ ଲକ୍ଷ୍ମୀନାରାୟଣ ଆଗ୍ରୱାଲ, ହାସ୍ୟସ୍ରଷ୍ଟା କବି ବସନ୍ତ କୁମାର ଶତପଥୀଙ୍କ ଜୀବନୀ ପ୍ରଦତ୍ତ ।

ସେହିପରି ୧୯୮୬ ମସିହାରେ 'ସପ୍ତତରଙ୍ଗ' ଜୀବନୀ ପୁସ୍ତକ ପ୍ରକାଶ ଲାଭ କରିଥିଲା । ଏହି ପୁସ୍ତକରେ ସ୍ଥାନଲାଭ କରିଥିଲେ ଐତିହାସିକ ଡକ୍ଟର ମନ୍ମଥନାଥ ଦାସ, ନାଟ୍ୟକାର ରଘୁନାଥ ପଣ୍ଡା, ସଙ୍ଗୀତଶିଳ୍ପୀ ମାର୍କଣ୍ଡେୟ ମହାପାତ୍ର, ସମାଜସେବୀ ଶ୍ୟାମସୁନ୍ଦର ମିଶ୍ର, ନୃତ୍ୟଗୁରୁ ପଙ୍କଜ ଚରଣ ଦାସ, କବି ଅନନ୍ତ ପଟ୍ଟନାୟକ ଓ ସଙ୍ଗଠକ ସଂଗ୍ରାହକ ଦାଶରଥି ପଟ୍ଟନାୟକଙ୍କ ଜୀବନୀ ।

୧୯୮୭ ମସିହାରେ ପ୍ରକାଶ ଲାଭ କରିଥିଲା 'ସପ୍ତପ୍ରଭା' । ଏହି ସଂକଳନରେ ସାହିତ୍ୟିକ ଅନୁପ ସିଂହଦେଓ, ଗବେଷକ ଡଃ ବଂଶୀଧର ମହାନ୍ତି, ବୈଜ୍ଞାନିକ ଡଃ ଗୋକୁଳାନନ୍ଦ ମହାପାତ୍ର, ନୃତ୍ୟଶିଳ୍ପୀ ଡଃ ପ୍ରିୟମ୍ବଦା ମହାନ୍ତି (ହେଜମାଡି), ସଙ୍ଗୀତଶିଳ୍ପୀ କାଶୀନାଥ ପୂଜାପଣ୍ଡା, ଚିତ୍ରଶିଳ୍ପୀ ଅସିତ୍ ମୁଖାର୍ଜି ଏବଂ ପ୍ରକାଶକ ଶୁକଦେବ ସାହୁଙ୍କ ଜୀବନୀ ସ୍ଥାନ ପାଇଥିଲା ।

ଏତଦ୍‌ବ୍ୟତୀତ ୧୯୮୮ ମସିହାରେ 'ସପ୍ତଧାରା' ଜୀବନୀ ପୁସ୍ତକ ପ୍ରକାଶଲାଭ କରିଥିଲା । ଏହି ପୁସ୍ତକରେ ସ୍ଥାନ ପାଇଥିଲେ ସଂସ୍କୃତ ପ୍ରବୀଣ ପଣ୍ଡିତ ଚିନ୍ତାମଣି ମିଶ୍ର, କବି କୃଷ୍ଣଚନ୍ଦ୍ର ତ୍ରିପାଠୀ, ଅଭିନେତ୍ରୀ ମଣିମାଳା ଦେବୀ, ଗବେଷକ ଶ୍ରୀ ଗୋବର୍ଦ୍ଧନଚନ୍ଦ୍ର ଉଦ୍‌ଗାତା, ନୃତ୍ୟଶିଳ୍ପୀ ଶ୍ରୀମତୀ ସଂଯୁକ୍ତା ପାଣିଗ୍ରାହୀ, ସମାଜସେବୀ ଶ୍ରୀମତୀ ରମ୍ଭାଦେବୀ ଓ ସୁଲଳିତ ଶାସ୍ତ୍ରୀୟ ସଙ୍ଗୀତ ଗାୟିକା ଶ୍ରୀମତୀ ବୀଣାପାଣି ମିଶ୍ରଙ୍କ ଜୀବନୀ ।

୧୯୮୯ ମସିହାରେ 'ସପ୍ତଶାଖା' ପୁସ୍ତକ ପ୍ରକାଶିତ ହୋଇଥିଲା । ଏ ପୁସ୍ତକରେ ଡଃ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ), ଶ୍ରୀ ନୃସିଂହନାଥ ଖୁଣ୍ଟିଆ, ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ଶ୍ରୀ କୁଞ୍ଜବିହାରୀ ମେହେର, ଶ୍ରୀ ମନ-

ମୋହନ ଚୌଧୁରୀ, ଶ୍ରୀ ବସନ୍ତ ଚରଣ ମହାନ୍ତି ଓ ଶ୍ରୀ ତ୍ରିପୁରନାଥ ମିଶ୍ର (ପୀରୁ)ଙ୍କ ଜୀବନୀ ସ୍ଥାନ ପାଇଛି ।

୧୯୯୦ ମସିହାରେ 'ସପ୍ତତାରକା' ପୁସ୍ତକ ପ୍ରକାଶିତ ହୋଇଥିଲା । ଏ ପୁସ୍ତକରେ ଗବେଷକ, କବି ଓ ଶିଳ୍ପୀ ଶ୍ରୀ ବିନୋଦ ରାଉତରାୟ, ଅଭିନେତା କଳାକାର ଦୁଃଖିରାମ ସ୍ୱାଇଁ, ନୃତ୍ୟସାଧକ ନୃତ୍ୟଗୁରୁ ଶ୍ରୀ ରଘୁନାଥ ଦତ୍ତ, ସଙ୍ଗୀତସାଧକ ସଙ୍ଗୀତାଚାର୍ଯ୍ୟ ଶ୍ରୀ ସୁକୁମାର ସାହୁ, ବିପ୍ଳବୀ କବି ଶ୍ରୀ ମନମୋହନ ମିଶ୍ର, ସାହିତ୍ୟିକ ରାଜଗୁରୁ କବିଭୂଷଣ ରାଜକିଶୋର ପଟ୍ଟନାୟକ ଓ ପ୍ରକାଶକ ପୀତାମ୍ବର ମିଶ୍ରଙ୍କ ଜୀବନୀ ଓ କୃତି ସ୍ଥାନ ପାଇଛି ।

୧୯୯୧ ମସିହାରେ ସେହିପରି ୭ ଜଣ ପ୍ରତିଭାବାନ ବ୍ୟକ୍ତିଙ୍କ ଜୀବନୀ ଉପରେ ଆଧାରିତ ପୁସ୍ତକ 'ସପ୍ତରଶ୍ମି' ପ୍ରକାଶଲାଭ କରିଥିଲା । ଏହି ପୁସ୍ତକରେ ଯେଉଁ ମହାନ ବ୍ୟକ୍ତିମାନଙ୍କର ଜୀବନୀ ସ୍ଥାନ ପାଇଥିଲା ସେମାନେ ହେଲେ—ସାମ୍ବାଦିକ ଯୁଗଳକିଶୋର ପାଣିଗ୍ରାହୀ, ଚାଳିକ ରାଜକିଶୋର ରାୟ, ଅଭିନେତା ବ୍ୟୋମକେଶ ତ୍ରିପାଠୀ, ଗବେଷକ କେଦାର ଚନ୍ଦ୍ର ମେହେର, କଳାକାର କୋଣ୍ଡଚରଣ ସାହୁ, ସମାଜସେବିକା ପାର୍ବତୀ ଗିରି ଏବଂ ପ୍ରକାଶକ ରାଧାଶ୍ୟାମ ମହାନ୍ତି ।

ଗତବର୍ଷ ଅର୍ଥାତ୍ ୧୯୯୨ ମସିହାରେ ୭ ଜଣ ପ୍ରତିଭାଧର ବ୍ୟକ୍ତିଙ୍କୁ ସମ୍ମାନିତ କରାଯାଇ ସେମାନଙ୍କ ଜୀବନୀ ଉପରେ ଆଧାରିତ "ସପ୍ତସାଧକ" ପୁସ୍ତକ ପ୍ରକାଶଲାଭ କରିଛି । ଏହି ପୁସ୍ତକରେ ଯେଉଁ ମହାନ୍ ବ୍ୟକ୍ତି-ମାନଙ୍କର ଜୀବନୀ ସଙ୍କଳିତ ହୋଇଛି ସେମାନେ ହେଲେ—କବି ଡକ୍ଟର ବିନୋଦଚନ୍ଦ୍ର ନାୟକ, ନାଟ୍ୟକାର ଶ୍ରୀଯୁକ୍ତ ପ୍ରାଣବନ୍ଧୁ କର, ସଂସ୍କୃତ ଭାଷାବିତ୍ ଜନସେବୀ କବିରାଜ ପଣ୍ଡିତ କୃଷ୍ଣଚନ୍ଦ୍ର ତ୍ରିପାଠୀଶର୍ମା, ଅଭିନେତା ଶ୍ରୀଯୁକ୍ତ ଦୀନବନ୍ଧୁ ଦାସ (ଝୀମା), ସଙ୍ଗୀତପ୍ରବୀଣ ଶ୍ରୀଯୁକ୍ତ ନିତାଇ ଚରଣ ସିହ୍ନା, ସାମ୍ବାଦିକ ଶ୍ରୀଯୁକ୍ତ ରାମଚନ୍ଦ୍ର ଦାଶ ଏବଂ ପ୍ରକାଶକ ଶ୍ରୀଯୁକ୍ତ ସହଦେବ ପ୍ରଧାନ ।

ସେହିପରି ଚଳିତବର୍ଷ ସାତଜଣ ପ୍ରତିଭାଧର ବ୍ୟକ୍ତିଙ୍କୁ ସମ୍ମାନିତ କରାଯାଇ ସେମାନଙ୍କ ଜୀବନୀ ଉପରେ ଆଧାରିତ 'ସପ୍ତଗୌରବ' ପୁସ୍ତକ ପ୍ରକାଶଲାଭ କରୁଛି । ଏହି ପୁସ୍ତକରେ ଯେଉଁ ମହାନ୍ ବ୍ୟକ୍ତିମାନଙ୍କର

ଜୀବନୀ ସଙ୍କଳିତ ହୋଇଛି ସେମାନେ ହେଲେ—ସବୁଜ ଯୁଗର ସାହିତ୍ୟିକ ଶ୍ରୀ ହରିଶ୍ଚନ୍ଦ୍ର ବରାଳ, ଗବେଷକ ଡଃ ବେଣୀମାଧବ ପାଢ଼ୀ, ଯନ୍ତ୍ରସଙ୍ଗୀତ ଶିଳ୍ପୀ ଶ୍ରୀ ଭକ୍ତବତ୍ସଳ ପାଣ୍ଡ, ଚିତ୍ରଶିଳ୍ପୀ ଶ୍ରୀ ଅଜିତ କେଶରୀ ରାୟ, ପଲ୍ଲୀକବି ଶ୍ରୀ ଗୋଲକଚନ୍ଦ୍ର ପ୍ରଧାନ, ଅଭିନେତା ଶ୍ରୀ ନିରଞ୍ଜନ ଶତପଥୀ ଓ ନୃତ୍ୟଗୁରୁ ଶ୍ରୀ ମାୟାଧର ରାଉତ ।

ଏହି ପ୍ରତିଭାଧର ବ୍ୟକ୍ତିମାନଙ୍କର ଜୀବନଚରିତ ଅନ୍ୟମାନଙ୍କୁ ଉଦ୍‌ବୁଦ୍ଧ କରିବ, ଏଥିରେ ସନ୍ଦେହ ନାହିଁ ।

ଆମେ ଆଶାକରୁ ଆମର ଏହି ଉଦ୍ୟମ ଓଡ଼ିଶାର ପାଠକ ପାଠିକାଙ୍କ ନିକଟରେ ପ୍ରତିଭାବାନ ବ୍ୟକ୍ତିମାନଙ୍କୁ ପରିଚିତ କରାଇବାରେ ସହାୟକ ହେବ । ସେମାନଙ୍କୁ ଯେଉଁ ମାନପତ୍ର ପ୍ରଦାନ କରାଯାଇଛି ତାହା ତାଙ୍କୁ କିଞ୍ଚିତ ପରିମାଣରେ ଆନନ୍ଦ ପ୍ରଦାନ କରିବ ଓ ନିରାମୟ ଜୀବନ-ଯାପନ ପାଇଁ ପ୍ରେରଣା ଯୋଗାଇବ ।

ଅବଶ୍ୟ ଆମର ଏ ଉଦ୍ୟମ ଯଥେଷ୍ଟ ନୁହେଁ । ଏ ଦିଗରେ ଆହୁରି ଅନେକ କିଛି କରିବାକୁ ବାକି ଅଛି । ତା' ସତ୍ତ୍ୱେ ବିଶ୍ୱାସ କରାଯାଏ ଯେ ପ୍ରାଥମିକ ପଦକ୍ଷେପ ସ୍ୱରୂପ ଏହି ଜୀବନୀ ସଂକଳନଗୁଡ଼ିକ ଭବିଷ୍ୟତ ପାଇଁ ଆଲୋକବର୍ତ୍ତିକା ସଦୃଶ କାର୍ଯ୍ୟ କରିବ ।

ସ୍କୁଲ, କଲେଜର କର୍ମକର୍ତ୍ତା ଏବଂ ଅଗଣିତ ପାଠକପାଠିକା ଏହି ସଂକଳନ କ୍ରୟ କରି ପାଠକଲେ ଆମ ଶ୍ରମ ସାର୍ଥକ ହୋଇପାରିବ ।

ଏ ଉଦ୍ୟମ ସତ୍ତ୍ୱେ ପାଠକ ସଂସଦର ସଦସ୍ୟମାନଙ୍କ ମନରେ ଯେ ଦୁଃଖ ନାହିଁ ତା' ନୁହେଁ; କର୍ତ୍ତବ୍ୟର ଅବହେଳା ଯୋଗୁ ପ୍ରତ୍ୟେକ ସଦସ୍ୟ ଦୁଃଖପ୍ରକାଶ କରନ୍ତି । ଏହାର କାରଣ ହେଉଛି କବି ଜ୍ଞାନୀନ୍ଦ୍ର ବର୍ମା, ଶିକ୍ଷା ପ୍ରସାରକ ଉପେନ୍ଦ୍ର ନାଥ ପ୍ରଧାନ, ପଲ୍ଲୀକବି ମାଧବ ଚନ୍ଦ୍ର ଶର୍ମା, ପ୍ରାବନ୍ଧିକ କପିଳେଶ୍ୱର ଦାଶ, ଜନସେବକ ରାଧାକୃଷ୍ଣ ବିଶ୍ୱାଳରାୟ, ଗବେଷକ ଅନନ୍ତ ପଦ୍ମନାଭ ପଟ୍ଟନାୟକ ଓ ସମାଲୋଚକ ଡକ୍ଟର ଗୋପାଳ ଚନ୍ଦ୍ର ମିଶ୍ର ପ୍ରଭୃତି ଅଗଣିତ ପ୍ରତିଭାଧର ବ୍ୟକ୍ତି ଇତିମଧ୍ୟରେ ଇହଲୀଳା ସାଙ୍ଗ କରିଛନ୍ତି । ସେମାନଙ୍କୁ ସମ୍ମାନିତ କରି ଜୀବନୀ ପୁସ୍ତକ ଛପାଇବା ପାଠକ

ସଂସଦ ପକ୍ଷରେ ସମ୍ଭବପର ହୋଇପାରି ନାହିଁ । ସେହିପରି ମାଆ ରମାଦେବୀ, ସମାଜସେବକ ଶ୍ରୀ ଶରତଚନ୍ଦ୍ର ମହାରଣା ପ୍ରମୁଖ ବରେଣ୍ୟ ବ୍ୟକ୍ତିମାନଙ୍କୁ ପାଠକ ସଂସଦ ସମ୍ମାନିତ କରିପାରି ନାହିଁ । ଏଥିପାଇଁ ପ୍ରଥମ ପାଞ୍ଚବର୍ଷରେ ସମ୍ମାନିତ ହୋଇଥିବା ପ୍ରତିଭାଧର ବ୍ୟକ୍ତିଙ୍କ ଜୀବନୀ ଉପରେ ଏକ ବିଶେଷ ସଂକଳନ ପ୍ରକାଶ ଓ ପାଠକ ସଂସଦ ଦ୍ୱାରା ସମ୍ମାନିତ ହୋଇ ନ ପାରିଥିଲେ ମଧ୍ୟ ଯେଉଁ ମହାନ୍ ବ୍ୟକ୍ତିଗଣ ଇତିମଧ୍ୟରେ ଇହଲୀଳା ସାଙ୍ଗ କରିଛନ୍ତି ତାଙ୍କ ଜୀବନୀ ସଂଗ୍ରହ ଉଦ୍ୟମ କରି ଉତ୍କଳ ପାଠକ ସଂସଦ ଏକ ସଂକଳନ ପ୍ରକାଶ କରିବା ପାଇଁ ଉଦ୍ୟମ କରିବ ।

ଏତଦ୍‌ବ୍ୟତୀତ 'ଉତ୍କଳ ପାଠକ ସଂସଦ'ର ଶୁଭେଚ୍ଛୁ, ପୃଷ୍ଠ-ପୋଷକ ଓ ସହାୟକ ରୂପେ ବିବେଚିତ ଯେଉଁ ମହାନ୍ ବ୍ୟକ୍ତିଗଣ ଏଇ ବିଗତ କେତେଦିନ ମଧ୍ୟରେ ପ୍ରାଣତ୍ୟାଗ କରିଛନ୍ତି ସେମାନଙ୍କ ଉଦ୍ଦେଶ୍ୟରେ ଆମେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ ।

ଶେଷରେ ଅଗଣିତ ପାଠକ-ପାଠିକା, ଲେଖକ, ଦର୍ଶକ, ଶ୍ରୋତା, କୃଷକ, ଶ୍ରମିକ ଏବଂ ସମାଜର ପ୍ରତ୍ୟେକ ସ୍ତରର ବ୍ୟକ୍ତିମାନଙ୍କର ସ୍ନେହ, ସଦ୍‌ଭାବ, ସଦିଚ୍ଛା ଚିରଦିନ ରହିଥାଉ, ଏହାହିଁ କାମନା ।

। ଇତି ।

**ବ୍ରଜମୋହନ ମହାନ୍ତି**

ସଂପାଦକ



ଡ଼କ୍ଟର ବେଣୀମାଧବ ପାଢ଼ୀ



ଶ୍ରୀ ଭକ୍ତବତ୍ସଳ ପାଣ୍ଡ



ଶ୍ରୀ ନିରଞ୍ଜନ ଶତପଥୀ

## ଦ୍ୱିତୀୟ ଭଙ୍ଗ

# ଶ୍ରୀ ଗୋଲୋକଚନ୍ଦ୍ର ପ୍ରଧାନ

ଶ୍ରୀ ଉମାକାନ୍ତ ପ୍ରଧାନ

କଟକ ସହର ଠାରୁ ଜଗତପୁର ଦେଇ କେନ୍ଦ୍ରାପଡ଼ା ରାସ୍ତାରେ ୪୫ କି: ମି: ଦୂରତ୍ୱ ଅତିକ୍ରମ କଲେ ପଡ଼େ କଣ୍ଟିକଣା ବଜାର। ସେଠାରୁ ମାହାଙ୍ଗା କଣ୍ଟିକଣା ରାସ୍ତାରେ ୬ କି: ମି: ଅତିକ୍ରମ କଲେ ଗୋପାଳପୁର ଗ୍ରାମ। ସଂକୀର୍ତ୍ତନ, ଯଜ୍ଞ ତଥା ଅନ୍ୟାନ୍ୟ ଧାର୍ମିକ କାର୍ଯ୍ୟରେ ନିଜକୁ ନିୟୋଜିତ କରିବାରେ ଏ ଗ୍ରାମର ଅଧିବାସୀଗଣ ପରମ୍ପରାକ୍ରମେ ସତତ ତତ୍ପର। ଏଥିସହିତ କାବ୍ୟ, ସାହିତ୍ୟ ଆଲୋଚନା ଓ ପୁରାଣ ପଠନ ପ୍ରତି ଏହି ଗ୍ରାମବାସୀମାନଙ୍କର ଥାଏ ପ୍ରବଳ ଆଗ୍ରହ। ସାଂସ୍କୃତିକ କାର୍ଯ୍ୟର ପୃଷ୍ଠପୋଷକତା କରିବା ପାଇଁ ଏ ଗ୍ରାମରେ ଥିବା ତତ୍କାଳୀନ ଜମିଦାର ପରିବାର ଥିଲେ ସର୍ବଦା ମୁକ୍ତହସ୍ତ। ଜମିଦାରର ଧନାଢ଼୍ୟ ଅହଙ୍କାର ପରିବର୍ତ୍ତେ; ବୈଷ୍ଣବସୁଲଭ ନମ୍ରଶୀଳତା ଥିଲା ଏହି ଜମିଦାର ପରିବାରର ବୈଶେଷତ୍ୱ। ଏହି ଗୋପାଳପୁର ଗ୍ରାମରେ ୧୮୯୮ ମସିହା ଭାଦ୍ରବ ମାସ ଶୁକ୍ଳପକ୍ଷ ଷଷ୍ଠୀ ତିଥିରେ ସୋମନାଥ ବ୍ରତ ଦିନ ଜନ୍ମଗ୍ରହଣ କରିଥିଲେ କବି ଗୋଲକଚନ୍ଦ୍ର ପ୍ରଧାନ।

ପିତା ବୀରଭଦ୍ର ପ୍ରଧାନ ଓ ମାତା ଭାନୁମତୀ ପ୍ରଧାନଙ୍କର ସେ ଥିଲେ ତୃତୀୟ ସନ୍ତାନ। ଏହି ଜମିଦାର ବଂଶର ରକ୍ଷଣଶୀଳତାର ଗଣ୍ଡି ମଧ୍ୟରେ ସୁଶାସନ ଓ ପ୍ରଜାବତ୍ସଳତା ସହିତ ବୈଷ୍ଣବ ଧର୍ମ ଭାବନା ସୁଷମ ସମନ୍ୱୟୀ

ଧାରାରେ ପଲ୍ଲବିତ ହୋଇଥିଲା । ସ୍ୱୀୟ ବଂଶର ତଥା ଗ୍ରାମର ରକ୍ଷଣଶୀଳତା ସମ୍ପର୍କରେ ବର୍ଣ୍ଣନା କରି କବି କହନ୍ତି ଯେ ଯେତେବେଳେ ଗୋରା ସାହେବମାନେ ଗାଁ ଭିତରେ ଦେଇ ଯାଉଥିଲେ, ସେମାନଙ୍କ ଯାତ୍ରା ପରେ ସ୍ତ୍ରୀଲୋକମାନେ ସେହି ରାସ୍ତାରେ ଗୋବର ପାଣି ପକାଉଥିଲେ । କବି ପରିବେଶ ଦୃଷ୍ଟିରୁ ଆବାଲ୍ୟରୁ ଥିଲେ ଧର୍ମାନୁରାଗୀ ଓ ଅଖଣ୍ଡ ଈଶ୍ୱର ବିଶ୍ୱାସୀ । କବିଙ୍କ ଏତାଦୃଶ ଈଶ୍ୱର ବିଶ୍ୱାସକୁ ବଦ୍ଧମୂଳ ତଥା ଦୃଢ଼ କରାଇଥିଲା ତାଙ୍କ ଗୃହରେ ଅଦ୍ୟାପି ପୂଜିତ ଇଷ୍ଟଦେବ ଲକ୍ଷ୍ମୀନାରାୟଣଙ୍କର ନିତ୍ୟ ନୈମିତ୍ତିକ ପୂଜା ଅର୍ଚ୍ଚନା । ଇଷ୍ଟଦେବଙ୍କ ସମ୍ମୁଖରେ ମା'ର ପଣତ-କାନି ଧରି ସନ୍ଧ୍ୟା ଆଳତି ଦର୍ଶନ କରୁ କରୁ ଅନେକ ସମୟରେ ଆତ୍ମବିସ୍ମୃତ ହୁଅନ୍ତି ବାଳକ ଗୋଲୋକଚନ୍ଦ୍ର । ଦେବତାଙ୍କ ସମ୍ମୁଖରେ ଏତାଦୃଶ ଆବେଗ ବାଳକ ଗୋଲୋକଙ୍କୁ ଈଶ୍ୱରଙ୍କର ପ୍ରଚ୍ଛନ୍ନ ଆଶୀର୍ବାଦ ମିଳି ଥିଲା । ସ୍ୱନିଷ୍ଠ ଧର୍ମ ତଥା ଈଶ୍ୱରବିଶ୍ୱାସ ସମ୍ପର୍କିତ କବିଙ୍କ ଧାରଣା ପଲ୍ଲବିତ ହୋଇଥିଲା, ତାଙ୍କର ପ୍ରପିତାମହ ଜଗଦୀଶ ପ୍ରଧାନଙ୍କର କୃତିତ୍ୱ ବହୁ ମୁଖରୁ ସଜ୍ଞାନ ଅବସ୍ଥାରେ ଶୁଣିବା ପରେ । କବି ଶ୍ରୀ ପ୍ରଧାନଙ୍କର ପ୍ରପିତାମହ ଦୁଇ ଦୁଇଥର ପଦବ୍ରଜରେ ବୃନ୍ଦାବନ ଗମନ କରି ତତ୍କାଳୀନ ସାମାଜିକ ପରିସ୍ଥିତିରେ ଏକ ମହାତ୍ମାରେ ପରିଣତ ହୋଇଥିଲେ । ଏପରିକି ତୃତୀୟ ଥର ବୃନ୍ଦାବନକୁ ତୀର୍ଥଯାତ୍ରା ତାଙ୍କର ଗୃହଠାରୁ ଶେଷ ଯାତ୍ରା ଥିଲା ।

ସେ ବୃନ୍ଦାବନରେ ପରବ୍ରହ୍ମ ପାଇଁ ସନ୍ନ୍ୟାସ ନେଇ, ଶେଷ ଜୀବନ ସନ୍ନ୍ୟାସୀ ଭାବରେ କଟାଇ, ସେଠାରେ ସମାଧି ଗ୍ରହଣ କରିଥିଲେ । ପ୍ରବାଦ ଅଛି ବୃନ୍ଦାବନରେ ଅଦ୍ୟାପି ପରିଦୃଷ୍ଟ ଓଡ଼ିଆ ମଠ ଏହି ଜଗଦୀଶ ପ୍ରଧାନଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । କବିଙ୍କ ପିତାମହ ଗୌରାଙ୍ଗଚରଣ ପ୍ରଧାନ ପିତାଙ୍କ ତୁଲ୍ୟ ଥିଲେ ଜ୍ଞାନୀ ତଥା ଧର୍ମାନୁରକ୍ତ । ତାଙ୍କର ବହୁ ପ୍ରଶଂସିତ ବିଶେଷତାଟି ହେଲା, ସେ ଥିଲେ ସଙ୍ଗୀତ ଓ କଳାପ୍ରିୟ । ବ୍ୟକ୍ତିଗତ ଭାବରେ ଅନେକ ପ୍ରକାର ବାଦ୍ୟଯନ୍ତ୍ର ସେ ବଜାଇ ପାରୁଥିଲେ । ଏହିମାନଙ୍କ ଠାରୁ ଧର୍ମାନୁରକ୍ତି, ସାହିତ୍ୟ ଓ କଳା ପ୍ରତି ଆସକ୍ତି ହିଁ କବି ଶ୍ରୀ ପ୍ରଧାନ ବଂଶଗତ ଗୁଣ ଭାବରେ ଆହରଣ କରିଥିଲେ । କବିଙ୍କ ଧର୍ମାନୁରକ୍ତିକୁ ଅଧିକ ପୁଷ୍କଳ କରିବାପାଇଁ ତାଙ୍କ ଗୃହରେ ଆତିଥ୍ୟ ନେଉଥିବା ଜାମାସୁତ

ବୈଷ୍ଣବ ତଥା ସେମାନଙ୍କ ଚିସ୍ତୀ, ଉଷ୍ଟ୍ର ତଥା ପତାକାଧାରୀ ସନ୍ନ୍ୟାସୀମାନଙ୍କର ଭୂମିକା ଆଦୌ ଗୌଣ ନଥିଲା । ସ୍ୱୀୟ ବାଲ୍ୟାବସ୍ଥାରେ ଏହିପରି ସଦଳବଳ ଆସି ଆତିଥ୍ୟ ଗ୍ରହଣ କରିଥିବା ନାଗା ସନ୍ନ୍ୟାସୀ ଓ ଜାମାପୁତ୍ର ବୈଷ୍ଣବଙ୍କୁ କବି ସ୍ୱଗୃହରେ ଦୁଇଥର ଦେଖିଛନ୍ତି ବୋଲି କଥା ପ୍ରସଙ୍ଗରେ ପ୍ରକାଶ କରନ୍ତି ।

ଏହି ଜମିଦାର ବଂଶ ଥିଲେ ପୂର୍ବକଥିତ ଶ୍ରୀଶ୍ରୀ ବୀରଭଦ୍ରେଶ୍ୱର ମହାଦେବଙ୍କର ବଂଶାନୁକ୍ରମିକ ପରିଚ୍ଛା । ତେଣୁ ଆଜନ୍ମରୁ ଶ୍ରୀ ଶ୍ରୀ ବୀରଭଦ୍ରେଶ୍ୱର କବି ଅନ୍ତରରେ ପ୍ରତିଷ୍ଠିତ ହୋଇ ସ୍ୱୀୟ ପ୍ରତିଷ୍ଠାକୁ ବେଶ ଦୃଢ଼ କରିଥିଲେ । ଅଦ୍ୟାବଧି ଏହି ମହାଦେବଙ୍କର ସମସ୍ତ ପରିଚାଳନାଗତ ଦାୟିତ୍ୱ କବିଙ୍କ ବଂଶଧର ହିଁ କରି ଆସୁଛନ୍ତି । କବିଙ୍କର ପରିଣତ ବୟସରେ ବୈଷ୍ଣବସୁଲଭ ଧୀନତା ଅତୀତ ସଂସ୍କାରର ଏକ ଫଳଶ୍ରୁତି ମାତ୍ର । ତେଣୁ କବି ନିଜ ମାନସ ରାଜ୍ୟରେ ରାମ, କୃଷ୍ଣ, ବୁଦ୍ଧ, ଶିବ ଓ ଜଗନ୍ନାଥ ଇତ୍ୟାଦି ଦେବଗଣଙ୍କୁ ପୂର୍ଣ୍ଣବ୍ରହ୍ମଙ୍କ ବିଭୂତି ଭାବରେ ହିଁ ଦେଖିଛନ୍ତି । ସ୍ୱୀୟ କାବ୍ୟ ରାଜ୍ୟରେ ଆବଶ୍ୟକସ୍ଥଳେ ସେ ପ୍ରତ୍ୟେକଙ୍କୁ ଯଥୋପଯୁକ୍ତ ସମ୍ମାନ ପ୍ରଦର୍ଶନ କରି ମିଶ୍ର ଧର୍ମୀୟ ଭାବଧାରାର ଉଦ୍‌ଘୋଷଣା କରିଛନ୍ତି । ସତ୍ୟଭାମା କାବ୍ୟର ପ୍ରଥମ ପଦରେ ଶ୍ଳେଷାଳଙ୍କାର ମାଧ୍ୟମରେ ପଞ୍ଚଦେବଙ୍କର ସ୍ତୁତି ଏହି ଭାବଧାରାର ଏକ ସାର୍ଥକ ବାହକ । ଯଥା—

> "ଆଦି ଭୁ ଅଚ୍ୟୁତ ଶିବା ହେ ସମ ଉରୁ ଉଦର
> ହରି ସ୍ନେହ କରି ବଧିରେ ପରସ୍ପ ରଙ୍ଗ କର
> ଅନନ୍ତରେ ବାସ କରିଛ ଅହି ବସରେ ମଣ୍ଡି
> ପଞ୍ଚଶ୍ଳେଷେ ପଞ୍ଚ ମୂରତି ନମେ ଦୁର୍ଗତି ଖଣ୍ଡି ।"

କବି ମାନେ ହିଁ କଳ୍ପନାବିଳାସୀ ଏବଂ ପ୍ରକୃତିପ୍ରେମୀ । ଶ୍ରୀ ପ୍ରଧାନଙ୍କ ଠାରେ ଏ ଗୁଣଦ୍ୱୟ ବେଶ୍ ସୁଲଭ୍ୟ । କବିଙ୍କୁ ଧର୍ମପ୍ରବଣ ହେବାପାଇଁ ବର୍ଣ୍ଣିତ ପରିବେଶ ଯେପରି ଅନୁପ୍ରେରିତ କରିଥିଲା, ତଦନୁରୂପ ଗୋପାଳପୁର ଗ୍ରାମର ତାତ୍କାଳିକ ପାରିପାର୍ଶ୍ୱିକ ପରିସ୍ଥିତି ଏବଂ ପରିବେଶ କବିଙ୍କୁ ପ୍ରକୃତିପ୍ରେମୀ ହେବାପାଇଁ ପ୍ରେରଣା ଯୋଗାଇ ଦେଇଥିଲା । କବିଙ୍କ ଜନ୍ମ ପୂର୍ବରୁ ଏ ଗ୍ରାମଥିଲା ଘଞ୍ଚ ଜଙ୍ଗଲ ପରିପୂର୍ଣ୍ଣ ଓ ଶ୍ୱାପଦଶଙ୍କୁଳ ।

କବିଙ୍କ ମନନ୍ଦକୁ ଏହି ଘଞ୍ଚ ଅରଣ୍ୟାନୀ ନିଜର ଜାଙ୍କଙ୍କ ହ୍ୱାପ୍ନିତ୍ରା ହରାଇ ନଥିଲା ।

କବି ସ୍ୱୟଂ ନିଜର ସ୍ମୃତିଚାରଣ କରି କହନ୍ତି ଯେ ତାଙ୍କ ସମୟରେ ଏହି ଗ୍ରାମ୍ୟ ଜଙ୍ଗଲ ବାଘ, ଭାଲୁ ତଥା ମୟୂର ଆଦିଙ୍କ ସହିତ ନାନାପ୍ରକାର ପଶୁପକ୍ଷୀ ଓ ସରୀସୃପଙ୍କ ଦ୍ୱାରା ପରିପୂର୍ଣ୍ଣ ଥିଲା । ଋତୁ ପରିବର୍ତ୍ତନ ସମୟରେ ଏହି ଅରଣ୍ୟାନୀ ନିତ୍ୟନୂତନ ଶୋଭା ଧାରଣ କରି କବିପ୍ରାଣକୁ ବେଶ ଉଦ୍‌ବେଳିତ କରୁଥିଲା । କବିଙ୍କ ଗ୍ରାମଠାରୁ ଅଦୂରରେ ଅବସ୍ଥିତ ପିଣ୍ଡପୁରୁଷ ଅରକ୍ଷିତ ଦାସଙ୍କ ତପୋପୂତ ଓଳାଶୁଣୀ ପାହାଡ଼ର ଦୃଶ୍ୟ କବିଙ୍କ ପ୍ରାଣରେ ପ୍ରକୃତି ପ୍ରେମର ଅପୂର୍ବ ଜୁଆର ସୃଷ୍ଟି କରିଥିଲା । ଓଳାଶୁଣୀ ପାହାଡ଼ ଶୀର୍ଷର ବନ୍ୟ ସବୁଜିମା ଭେଦି ଏହି ଗ୍ରାମକୁ ଦୃଶ୍ୟମାନ ହେଉଥିବା ଓଳାଶୁଣୀ ଗୁମ୍ଫା ମନ୍ଦିରର ଧବଳଶୀର୍ଷ କବିଙ୍କ ପାଇଁ ହୋଇଥିଲା ବିଭୁକୃପାର ଶାନ୍ତ୍ୱନାପ୍ରଦାୟୀ ପ୍ରତିମୂର୍ତ୍ତି ପରି ।

କବି ନିଜର ଚାଟଶାଳୀ ଶିକ୍ଷା ଆରମ୍ଭ କରିଥିଲେ ଗୋପାଳପୁର ଗ୍ରାମ ନିକଟସ୍ଥ ଗିରିଟୋଳର ଜଣେ ଗୁମାସ୍ତାଙ୍କ ନିକଟରୁ, ଯେ କି କବିଙ୍କ ସହିତ ତାଙ୍କର ଅନ୍ୟାନ୍ୟ ଭାଇମାନଙ୍କୁ କବିଙ୍କ ନିଜ ଘରେ ହିଁ ପଢ଼ାଉଥିଲେ । କବିଙ୍କୁ ଯେତେବେଳେ ପାଞ୍ଚ ବର୍ଷ ସେତେବେଳେ କଟକ ରାହାସବିହାରୀ ମଠର ତାତ୍କାଳୀକ ପ୍ରାଚାର୍ଯ୍ୟ ଶ୍ରୀ ଶ୍ରୀ ରାଧାରମଣଦେବ, ଯାହାଙ୍କୁ ନିତାଇ ଚୈତନ୍ୟଙ୍କ ସମ୍ମିଶ୍ରିତ ରୂପ ବୋଲି ବୈଷ୍ଣବ ସମ୍ପ୍ରଦାୟ ଜ୍ଞାନ କରନ୍ତି, ସେ ତାଙ୍କୁ ଗୁରୁମନ୍ତ୍ର ପ୍ରଦାନ କରିଥିଲେ । ଶ୍ରୀ ଶ୍ରୀ ରାଧାରମଣ ଦେବଙ୍କ ସମ୍ପର୍କରେ କବିଙ୍କ ଚିନ୍ତାଧାରା ଅତି ଉଚ୍ଚକୋଟୀର ।

ବୈଷ୍ଣବ ସମ୍ପ୍ରଦାୟର ଜଣେ ପ୍ରମୁଖ ପ୍ରବକ୍ତାଭାବରେ ରାଧାରମଣ ଦେବ କବିଙ୍କ ପରିବାରରେ ଦେବତା ଜ୍ଞାନରେ ପୂଜିତ ହେଉଥିଲେ । କବି ସ୍ୱୀୟ ସ୍ମୃତିଚାରଣ କରି କହନ୍ତି, ତାଙ୍କୁ ମନ୍ତ୍ରଦେବା ସମୟରେ ଶ୍ରୀ ଶ୍ରୀ ରାଧାରମଣ ଦେବ କବି ପରିବାରରେ ଏକ ପାଳିତ ବିରାଡ଼ିକୁ ସ୍ୱହସ୍ତରେ ଆଉଁଷି ଦେଇଥିଲେ । ସେହାରା ପ୍ରୋକ୍ତ ବିରାଡ଼ି ମୃତ୍ୟୁ ପର୍ଯ୍ୟନ୍ତ ଆମିଷ ଭକ୍ଷଣରୁ ନିବୃତ୍ତ ରହିଥିଲା ଏବଂ ସେହି ବିରାଡ଼ିର ମୃତ୍ୟୁପରେ ସମସ୍ତ ବୈଷ୍ଣବୀୟ ମାନ୍ୟତା ସହ ତାହାକୁ ସମାଧିସ୍ଥ କରାଯାଇଥିଲା ।

ଅଦ୍ୟାବଧି ମହାତ୍ମା ରାଧାରମଣ ଦେବଙ୍କ ପ୍ରତିଷ୍ଠିତ କବି ଗୃହର ଇଷ୍ଟଦେବ ଲକ୍ଷ୍ମୀନାରାୟଣଙ୍କ ବିମାନ ନିକଟରେ ପୂଜା ପାଉଛନ୍ତି । ଗୁମାସ୍ତାଙ୍କ ଠାରୁ ଅକ୍ଷର ଶିକ୍ଷା ତଥା ଚାଟଶାଳୀର ପ୍ରାଥମିକ ଶିକ୍ଷା ଶେଷ ହେବାପରେ ନଇଗୁଆଁ ଗ୍ରାମର ସ୍ୱର୍ଗତ ବନମାଳୀ ସିଂଙ୍କ ଠାରୁ ଅଙ୍କ, ସାହିତ୍ୟ ଆଦି କିଛିକାଳ ଅଧ୍ୟୟନ କରିଥିଲେ । ମାତ୍ର ଦୁଃଖର ବିଷୟ ଏହି ସମୟରେ ସିଂଙ୍କର ଦେହାନ୍ତ ଘଟିଲା । ଯୋଗୁଁ କବିଙ୍କ ଶିକ୍ଷା-ପ୍ରାପ୍ତିରେ ବାଧା ସୃଷ୍ଟି ହେଲା । ଏପରିକି କବି ଦୁଇବର୍ଷ କାଳ ଶିକ୍ଷାଗ୍ରହଣ କରିପାରିଲେ ନାହିଁ । କବିଙ୍କୁ ପ୍ରାୟ ସେତେବେଳକୁ ନଅ ବର୍ଷ ବୟସ । ଏହି ସମୟରେ ଗୋପାଳପୁର ନିକଟସ୍ଥ ଅଚ୍ୟୁତପୁର ଗ୍ରାମର ଆଜନ୍ମ-ବ୍ରହ୍ମଚାରୀ ପରମ ସାଧୁ ଶ୍ରୀ ଘନଶ୍ୟାମ ଦାସ କବିଙ୍କୁ ସରସ୍ୱତୀ ମନ୍ତ୍ର ପ୍ରଦାନ କରିଥିଲେ । ଏହି ମନ୍ତ୍ର ଲାଭପରେ କବିଙ୍କ ଧୀଶକ୍ତିରେ ପ୍ରଚଣ୍ଡ ପରିବର୍ତ୍ତନ ଆସିଥିଲା ।

ତତ୍ପରେ ୧୯୧୦ ମସିହାରେ କବି ନିକଟସ୍ଥ ଅସୁରେଶ୍ୱର ମାଇନର ସ୍କୁଲରେ ଚତୁର୍ଥ ଶ୍ରେଣୀରେ ନାମ ଲେଖାଇଲେ । ଏହି ବିଦ୍ୟାଳୟ ଏ ଅଞ୍ଚଳର ଏକମାତ୍ର ବିଦ୍ୟାଳୟ ଥିଲା । ଏହି ବିଦ୍ୟାଳୟରୁ ୧୯୧୪ ମସିହାରେ କବି ମାଇନର ପାଶ୍ କରି କଟକ ମିଶନ ହାଇସ୍କୁଲରେ ନାମ ଲେଖାଇଲେ । ଏଠାରେ କବି ସ୍ୱନାମଧନ୍ୟ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କୁ ନିଜର ଶିକ୍ଷକ ଭାବରେ ଲାଭ କରିଥିଲେ । ସେହି ସମୟରେ ଶ୍ରୀ ସାହୁ ହିନ୍ଦ୍ ସେବକ ସମିତିର ଜଣେ ସକ୍ରିୟ ସଭ୍ୟ ଥିଲେ । ଶ୍ରୀ ସାହୁଙ୍କର ବିଦ୍ୱତ୍ତା ତଥା ସମସ୍ତ ବ୍ୟକ୍ତିଗତ ସୁଗୁଣାବଳୀ ଦ୍ୱାରା କବି ବିଶେଷ ଭାବରେ ଅନୁପ୍ରେରିତ ହୋଇଥିଲେ ।

ଯାହାର ପ୍ରଭାବରେ କବି ପ୍ରଧାନଙ୍କ କୈଶୋରୋଦ୍ଦୀପ୍ତ ମାନସିକତାରୁ ସ୍ଫୁର୍ତ୍ତି ହୋଇଥିଲା 'ସଂଯୁକ୍ତା' ଓ 'ହରିଶ୍ଚନ୍ଦ୍ର' ନାମକ ଦୁଇଟି ଖଣ୍ଡକାବ୍ୟ, ବର୍ତ୍ତମାନ ଯାହା ଦୁଃଷ୍ପ୍ରାପ୍ୟ । କବିଙ୍କ କାବ୍ୟ ସଂସାର ମଧ୍ୟରେ ଏହା ଏତେ ସ୍ପୃହିତ ହୋଇଥିଲେ ମଧ୍ୟ ସେହି ସମୟରେ ଏହି କାବ୍ୟଦ୍ୱୟ କବିଙ୍କୁ ନିଜର ଶିକ୍ଷକବୃନ୍ଦ ତଥା ସାଥି ମହଲରେ ଏକ ସମ୍ମାନଜନକ ସ୍ଥାନ ପ୍ରଦାନ କରିଥିଲା । ଏହି ବିଦ୍ୟାଳୟରୁ ୧୯୧୮ ମସିହାରେ ସେ ମାଟ୍ରିକ୍ୟୁଲେସନ ପାଶ୍ କଲେ । ତତ୍ପରେ ରେଭେନ୍ସା ମହାବିଦ୍ୟାଳୟରେ ନାମ ଲେଖାଇ

ଥିଲେ । ସେଠାରେ ଆଇ. ଏ. ଶ୍ରେଣୀରେ ନାମ ଲେଖାଇ ୧୯୬୦ ମସିହାରେ ଉତ୍ତୀର୍ଣ୍ଣ ହେଲେ ।

ଏହାପରେ କବି ପ୍ରଧାନ ବିବାହ କଲେ, ମାହାଙ୍ଗା ଥାନା ଅନ୍ତର୍ଗତ ଆନନ୍ଦପୁର ନିବାସୀ ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କ ମଧ୍ୟମା କନ୍ୟା ବେଲଗଣୀଙ୍କୁ । ବୈବାହିକ ଜୀବନର ପ୍ରାରମ୍ଭିକ ସ୍ମୃତିମଧୁର ଦିନଗୁଡ଼ିକ ଅତି ସୁନ୍ଦର ଓ ସରଳ ଭାବରେ କଟିଲା ସମସ୍ତ ଅତିବାହିତ କରାଇ ଦେଲା । କ୍ଷୟିଷ୍ଣୁ ଜମିଦାର ପରିବାରର ଆୟୁ ଏକ ବହୁକୁଟୁମ୍ବୀ ଗୃହସ୍ଥ ପାଇଁ ଅଅଣ୍ଟ ହେଲା । ତେଣୁ କବିଙ୍କ ମାନସିକତାରେ ପ୍ରବେଶ କଲା ଅର୍ଥୋପାର୍ଜନର ଚିନ୍ତା ।

ଯାହାର ଫଳ ସ୍ୱରୂପ ୧୯୬୩ ମସିହାରେ କବି ତାଙ୍କର ସତୀର୍ଥ ଶ୍ରୀର୍ଥାନନ୍ଦ ମହାନ୍ତିଙ୍କ ପିତା ବାମନ ଚରଣ ମହାନ୍ତିଙ୍କ ସହିତ ସମ୍ବଲପୁର ସିଭିଲ୍ କୋର୍ଟକୁ ଯାଇଥିଲେ ଆପ୍ରେଣ୍ଟିସ ଶିଖିବା ପାଇଁ । କର୍ମାନ୍ୱେଷଣର ଆଦ୍ୟ ପାହାଚରୁ ହିଁ କବିଙ୍କୁ ଲକ୍ଷ୍ୟଚ୍ୟୁତ କରିଥିଲା ରୋଗ । ସମ୍ବଲପୁରରେ ମାତ୍ର ତିନିମାସ ବିତାଇବା ପରେ ସେ ହେଲେ ପ୍ରବଳ ମ୍ୟାଲେରିଆ ଜ୍ୱରାକ୍ରାନ୍ତ । ସେଠାରେ ସେ ନେଉଥିବା ସମସ୍ତ ଚିକିତ୍ସା ବ୍ୟର୍ଥ ହେବାରୁ କବିଙ୍କ ଶ୍ୱଶୁର କବିଙ୍କୁ ତାଙ୍କ ସ୍ୱଗ୍ରାମ ଆନନ୍ଦପୁରକୁ ନେଇ ଆସିଲେ ଏବଂ ସେଠାରେ ଚିକିତ୍ସା କରି ତାଙ୍କୁ ଆରୋଗ୍ୟ ଲାଭ କରାଇଲେ ।

ଏ ସମୟକୁ କବିଙ୍କ ଆର୍ଥିକ ସ୍ଥିତି ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଥିଲା । ଜମିଦାର ଭାବରେ ପୂର୍ବପୁରୁଷଙ୍କ ସମସ୍ତ ଆୟ ଜମିଦାରୀ ଉଚ୍ଛେଦ ପରେ କ୍ରମକ୍ଷୟିଷ୍ଣୁ ଅବସ୍ଥା ପ୍ରାପ୍ତ ହୋଇ କବିଙ୍କ କର୍ମାନ୍ୱେଷଣ ସମୟକୁ ନାମକୁ ମାତ୍ର ରହିଥିଲା । ତେଣୁ କୁଟୁମ୍ବ ପ୍ରତିପୋଷଣ ପାଇଁ କର୍ମାନ୍ୱେଷଣ ହୋଇ ଉଠିଲା କବିଙ୍କ ପାଇଁ ଏକାନ୍ତ ଅପରିହାର୍ଯ୍ୟ । ମ୍ୟାଲେରିଆରୁ ମୁକ୍ତି ପାଇବା ପରେ କବି ଗଞ୍ଜାମ ଜିଲ୍ଲାର ଚୂନ କମ୍ପାନୀରେ କିଛିଦିନ ପାଇଁ କାର୍ଯ୍ୟ କରିଥିଲେ ।

ତତ୍କାଳୀନ ଅବସ୍ଥାରେ ଆଇ.ଏ. ପାସ୍ କରିଥିବା ଶିକ୍ଷିତ ଯୁବକ ପାଇଁ ଆଶାନୁରୂପ କର୍ମନିଯୁକ୍ତି ନହେବା ଯେ କେତେ ବେଦନାଦାୟକ କବି ତାହା ମର୍ମେ ମର୍ମେ ଅନୁଭବ କରିଥିଲେ, ତେଣୁ ମାତ୍ର ଏକମାସ କାର୍ଯ୍ୟ କରିବା ପରେ ସେ ପୁନର୍ବାର ସ୍ୱୀୟ ଗ୍ରାମ ଗୋପାଳପୁରକୁ ପ୍ରତ୍ୟାବର୍ତ୍ତନ

କରେ ମାନସିକ ଶାନ୍ତିଲାଭ ଆଶାରେ । କବି ପୁନର୍ବାର ଜୀବିକା ଉପାର୍ଜନ ଲକ୍ଷ୍ୟରେ ମୟୂରଭଞ୍ଜ ଯିବା ପାଇଁ ସ୍ଥିର କଲେ । ଲକ୍ଷ୍ମୀନାରାୟଣଙ୍କ ପାଦ-ପଦ୍ମରେ ପ୍ରଣତି ଜଣାଇ ଶୁଭ ଅବସରରେ ଯାତ୍ରା ଆରମ୍ଭ କଲେ । ମାତ୍ର ଦୈବର ବିଧାନ ବଡ଼ ବିଚିତ୍ର । କଟକ ରେଳ ଷ୍ଟେସନ ନିକଟରେ ପହଞ୍ଚିବା ବେଳକୁ ତାଙ୍କୁ ପ୍ରବଳ ଜ୍ୱର । ଗାଡ଼ି ଆସିବାକୁ ଅଧଘଣ୍ଟା ବିଳମ୍ବ ଥାଏ । ପ୍ଲାଟ ଫର୍ମରେ ଥିବା ଏକ ଦୋକାନୀଙ୍କୁ ଜଳଖିଆ ମାଗିଲେ । ପ୍ଲାଟ୍‌ଫର୍ମର ପରିବେଶରେ ବନ୍ଦୀ ନ ହୋଇ ଦୁର୍ଗନ୍ଧ କରୁଥିବା ବାସି ଜିଲପିରୁ ଦୋକାନୀ ଜ୍ୱରଗ୍ରସ୍ତ କବିଙ୍କୁ ବଢ଼ାଇ ଦେଲା । ତାହାକୁ ଗ୍ରହଣ କରିବା ପୂର୍ବରୁ ହିଁ ତାର ଗନ୍ଧରେ ଅତିଷ୍ଠ ହୋଇ କବି ଜିଲପିକୁ ଦୋକାନୀକୁ ଫେରାଇ ନେବାକୁ କହିଲେ ।

ମାତ୍ର ଉପଯୁକ୍ତ ସୁଯୋଗକୁ ହାତଛଡ଼ା କରିବାକୁ ପ୍ରସ୍ତୁତ ନଥିବା ଦୋକାନୀ ଫେରାଇ ନେବାକୁ ଅସମ୍ମତି ପ୍ରକାଶ କରନ୍ତେ ଉପାୟହୀନ କବି ଜ୍ୱରଗ୍ରସ୍ତ ପ୍ରବଳ ବିରକ୍ତିରେ ତାକୁ ଦୂରକୁ ଫିଙ୍ଗିଦେଇ ଉପଯୁକ୍ତ ମୂଲ୍ୟ ଦୋକାନୀକୁ ଦେବାକୁ ବାଧ୍ୟ ହେଲେ । ଏହି ସମୟକୁ ଟ୍ରେନ ଆସି ଯାଇଥିଲା । କବି ତରତରରେ ଡବା ଭିତରକୁ ଉଠିଗଲେ । ଯାତ୍ରା ସମୟରେ ରାତିରେ ପ୍ରବଳ ବର୍ଷା ହେଲା । ନିଜ ସ୍ଥାନରେ ବସିଥିବା ଅବସ୍ଥାରେ କବି ଝରକା ବାଟ ଦେଇ ହାତ ବଢ଼ାଇ କେତେ ଅଞ୍ଜୁଳା ବର୍ଷା ପାଣି ପିଇ ଦେଇଥିଲେ । ପରଦିନ ସକାଳ ସାତଟା ସମୟରେ ରୂପସା ଷ୍ଟେସନରେ ପହଞ୍ଚିଲେ । ପ୍ରଥମତଃ ଜ୍ୱର, ଦ୍ୱିତୀୟରେ ଅଭୁକ୍ତ ଅବସ୍ଥା, ତୃତୀୟରେ ଯାତ୍ରାଜନିତ କ୍ଲାନ୍ତି, ସର୍ବୋପରି ବିଗତ ରାତିରେ ବର୍ଷାଜଳ ପାନ ଏସବୁର ସମନ୍ୱୟରୁ ଝାଡ଼ା ରୋଗରେ ଆକ୍ରାନ୍ତ ହେଲେ କବି ।

ସେ ସମୟକୁ ମହାମାରୀ ହଇଜା ମଧ୍ୟ ନିଜର ପ୍ରଭାବ ବିସ୍ତାର କରିଥାଏ । ତେଣୁ ତାଙ୍କ ମନରେ ସ୍ୱତଃ ଧାରଣା ହେଲା ଯେ ହଇଜା ଦ୍ୱାରା ଆକ୍ରାନ୍ତ ହୋଇଛନ୍ତି ସେ । ସୌଭାଗ୍ୟବଶତଃ ସେଠାରେ ତାଙ୍କର ଆପିଲେ ଗ୍ରାମ ନିବାସୀ ଜନୈକ ବନ୍ଧୁ, ଯେ କି ବେତନଟିରେ ଚାକିରି କରୁଥାନ୍ତି, ସହିତ ସାକ୍ଷାତ ହେଲା । ସେ ବ୍ୟକ୍ତି କବିଙ୍କ ଏତାଦୃଶ ଅବସ୍ଥା ଦେଖି ତାଙ୍କୁ ତାଙ୍କ ନିଜ ଭଡ଼ାଘରେ ରହିବାକୁ ଡାକିଲେ । କିଛି ସମୟ ତାଙ୍କ ଘରେ

ରହି ଟିକିଏ ସୁସ୍ଥ ଅନୁଭବ କରନ୍ତେ ବାରିପଦା ବାହାରି ପଡ଼ିଲେ । ବାରିପଦାରେ କବିଙ୍କର କୌଣସି ଆତ୍ମୀୟ ବା ସମ୍ପର୍କୀୟ ମଧ୍ୟ ନଥାନ୍ତି ।

ତେଣୁ ଭଡ଼ାଘର ଖୋଜିବା ବ୍ୟତୀତ ତାଙ୍କର ଅନ୍ୟ କୌଣସି ପନ୍ଥା ନଥିଲା । କେତେକ ଲୋକ ତାଙ୍କୁ ଜଗନ୍ନାଥ ମନ୍ଦିରରେ ରହିବା ପାଇଁ ପରାମର୍ଶ ଦେଲେ । ତଦନୁଯାୟୀ କବି ଶ୍ରୀଜଗନ୍ନାଥ ମନ୍ଦିର ନିକଟରେ ପହଞ୍ଚିଗଲେ । ମନ୍ଦିର ନିକଟରେ ଭଡ଼ାଘର ପାଇଁ କଥାବାର୍ତ୍ତା କରୁଥିବା ସମୟରେ ତାଙ୍କୁ ଏକ ପରିଚିତ ସ୍ୱରରେ 'ଆରେ, ଆରେ' କେହି ଡାକିବାର ଶୁଣାଗଲା । ପଛକୁ ବୁଲି ଦେଖନ୍ତେ ସେଠାରେ ଉପସ୍ଥିତ ଥିଲେ ନିଜଗ୍ରାମର ବାଲ୍ୟବନ୍ଧୁ ମଦନ ଓରଫ ଶ୍ରୀ ପଦ୍ମଚରଣ ପ୍ରଧାନ । କବିଙ୍କ ବାରିପଦା ଯିବାର ସାତ ଆଠ ଦିନ ପୂର୍ବରୁ ପଦ୍ମଚରଣ ଓ ନିକଟସ୍ଥ ଗ୍ରାମ ଚୋରିନ୍ଦପୁରର ଆକୁଳ ପ୍ରଧାନ ଦୁହିଁରୁ ସେଠାରେ ଭଡ଼ା ଘରେ ରହି ଚାକିରି କରୁଥିବା ମଙ୍ଗଳପୁର ଗ୍ରାମର ଶ୍ରୀ ସର୍ବେଶ୍ୱର ପ୍ରଧାନଙ୍କ ନିକଟରେ ଅବସ୍ଥାନ କରିଥାନ୍ତି ।

ସେହି ଦୁଃସମୟରେ ନିଜ ବନ୍ଧୁର ଉପସ୍ଥିତି କବିଙ୍କୁ ପ୍ରଭୂତ ଆନନ୍ଦ ଦେଇଥିଲା । ଗାଁ ଠାରୁ ବହୁ ଦୂରରେ ପୁଣି ରୋଗଗ୍ରସ୍ତ ଅବସ୍ଥାରେ ଅସହାୟ ହୋଇ ବୁଲୁଥିବା ବ୍ୟକ୍ତି ସତ୍ତ୍ୱ ପାଇଁ ଅନ୍ତରଙ୍ଗର ଏପରି ଉପସ୍ଥିତି ଓ ଆହ୍ୱାନ ଯେ କେତେ ପ୍ରୀତିପ୍ରଦ ତାହା ଅନୁଭବୀ ହିଁ କହିପାରିବ । ସେହିଠାରେ ସାଥୀମାନଙ୍କ ନିକଟରେ ରହି କବି ବରୁଆ ଟିମ୍ବର କମ୍ପାନୀକୁ ନିଯୁକ୍ତି ପାଇଁ ଆବେଦନ କଲେ ଏବଂ ନିଯୁକ୍ତି ମଧ୍ୟ ପାଇଲେ । ଏହି ସ୍ଥାନରେ କର୍ମ କରୁଥିବା ସମୟରେ କବି ଏକ ଅଲୌକିକ ଘଟଣାର ସମ୍ମୁଖୀନ ହୋଇ-ଥିଲେ, ଯାହାକୁ କବି ବହୁବାର ବର୍ଣ୍ଣନା କରିଛନ୍ତି ଏବଂ ପ୍ରତ୍ୟେକ ଥର ରୋମାଞ୍ଚିତ ହୋଇ ଅଶ୍ରୁତ୍ୟାଗ କରିଛନ୍ତି ।

ମୟୂରଭଞ୍ଜର ଯଶୀପୁର ଠାରେ ଅବସ୍ଥିତ କଲୁଆ ଟିମ୍ବର କମ୍ପାନୀର ଅଫିସ । ଏହି କମ୍ପାନୀର ଏକ ସବ୍ ଅଫିସ ପ୍ରଖ୍ୟାତ ଶିମିଳିପାଳ ପାହାଡ଼ ଶୀର୍ଷରେ ଚହାଲା ନାମକ ସ୍ଥାନରେ ଅବସ୍ଥିତ ଥିଲା । ଏକଦା କବିଙ୍କୁ କାର୍ଯ୍ୟୋପଲକ୍ଷରେ ବାରିପଦାରୁ ଚହାଲା ସବ୍ ଅଫିସ ଦେଇ ଯଶୀପୁର ଅଫିସକୁ ଯିବାର ଥାଏ । ଏକେ ତ ଘଞ୍ଚ ଜଙ୍ଗଲ । ତା ମଧ୍ୟରେ ହାତୀ, ବାଘ,

ଭାଲୁ ଆଦି ହିଂସ୍ର ଜନ୍ତୁ ଦିନ ଦ୍ୱିପ୍ରହରରେ ମଧ୍ୟ ଅବାଧ ବିଚରଣ କରନ୍ତି। ସର୍ବୋପରି ପାହାଡ଼ିଆ ଉଠାଣି ଗଡ଼ାଣି ବନ୍ଧୁର ରାସ୍ତା ।

ଯଦ୍ୟପି ସେହି ଭୟ ଶଙ୍କୁଳ ଗିରିପଥ ଦେଇ କମ୍ପାନୀ ତରଫରୁ ଦିନରେ ଦୁଇଥର ମଇଁଷି ଟଣା ଗାଡ଼ି ଯିବାର ବନ୍ଦୋବସ୍ତ କରାଯାଇ ଥିଲା, କବି ଏ ବ୍ୟବସ୍ଥା ସହିତ ପରିଚିତ ନଥିଲେ । ତେଣୁ ବାଧ୍ୟହୋଇ ପାଦରେ ଚାଲି ଚାଲି ଯିବାର ନିଷ୍ପତ୍ତି ଗ୍ରହଣ କଲେ । ବାରିପଦା ଠାରୁ ସେହି ଟିମ୍ବର କମ୍ପାନୀର ଡାକ୍ତର ମଧ୍ୟ ସହଯାତ୍ରୀ ଭାବରେ ଯିବାକୁ ବାହାରିଲେ । ଗିରିବର୍ତ୍ମ ଅତିକ୍ରମ ଅନଭ୍ୟସ୍ତ କବି ପାଦ କିଛି ଦୂର ଅତିକ୍ରମ କଲାପରେ କ୍ଲାନ୍ତ ହୋଇ ପଡ଼ିଲେ ।

କ୍ରମେ କ୍ରମେ କବି ତୃଷାରେ ଅସ୍ଥିର ହେଲେ । ସହଯାତ୍ରୀ ଚିକିତ୍ସକ ଜଣଙ୍କୁ ଅନୁରୋଧ କଲେ, ତାଙ୍କୁ ଜଳ ପ୍ରଦାନ କରିବାପାଇଁ । ମାତ୍ର ପର୍ଷ୍ଣୁତ ବା ସମ୍ମୁଖରେ ଜଳପ୍ରାପ୍ତିର କ୍ଷୀଣତମ ସମ୍ଭାବନା ନଥିବା ଦର୍ଶାଇ, କବିଙ୍କୁ ପଥ ମଧ୍ୟରେ ଏକା ଛାଡ଼ିଦେଇ ସହଯାତ୍ରୀ ଜଣଙ୍କ ଗିରିପଥର ଅଙ୍କାବଙ୍କା ରାସ୍ତାରେ ଅଦୃଶ୍ୟ ହୋଇଗଲେ । ପନ୍ଥରେ ଜଙ୍ଗଲ ରାସ୍ତାରେ ପଡ଼ିରହିଲେ ତୃଷିତକଣ୍ଠ, ସହାୟଶୂନ୍ୟ କବି । ତୃଷାରେ ତଣ୍ଡି ଶୁଖି ଆସୁଛି । ଦୃଷ୍ଟିଶକ୍ତିର ପରିଧି ଧୀରେ ଧୀରେ କେନ୍ଦ୍ରବିନ୍ଦୁ ଆଡ଼କୁ ମାଡ଼ି ଆସୁଛି । କବି ଚେତନାରେ ଚିତ୍ରିତ ହେଲା ସ୍ୱମହାଯାତ୍ରାର ଦୃଶ୍ୟରାଜି । ଆତ୍ମୀୟସ୍ୱଜନ, ପିତା, ମାତା, ସମସ୍ତଙ୍କର ପ୍ରିୟମୁଖ ସ୍ମୃତି ଦର୍ପଣରେ ଉଦ୍‌ଭାସିତ ହେଲା ।

ସର୍ବଶେଷରେ ଇଷ୍ଟଦେବ ଲକ୍ଷ୍ମୀନାରାୟଣଙ୍କର ଶାନ୍ତ, ସ୍ନିଗ୍ଧ ଅଭୟମୁଦ୍ରାଧାରୀ ରୂପ କବି ମାନସ ଚକ୍ଷୁରେ ପରିଦୃଷ୍ଟ ହେଲା । କବି ଇତିମଧ୍ୟରେ ଉପବେଶନ କରିଥିବା ପଥପାର୍ଶ୍ୱ ଇଷ୍ଟଦେବଙ୍କ ଉଦ୍ଦେଶ୍ୟରେ ଅନ୍ତିମ ଶେଷ ପ୍ରଣତି ଜ୍ଞାପନ କଲେ । ଅବଲୀଳାକ୍ରମେ ସ୍ୱପରିଧେୟ ପଞ୍ଜାବୀ ପକେଟରେ ହାତ ପୂରାଇ ଦୈବାତ୍ ଏକ ସୁନ୍ଦର ଲାଲଫଳ ପ୍ରାପ୍ତ ହେଲେ । ଫଳଟି ବଡ଼ୁଦଉ ବୋଲି ଏହାର ଆଶ୍ଚର୍ଯ୍ୟଜନକ ଅବସ୍ଥିତି, ରୂପ ଓ ଗନ୍ଧ ପ୍ରମାଣିତ କରୁଥିଲା । କବି ସେ ଫଳକୁ ତତ୍‌କ୍ଷଣାତ୍ ଅର୍ଦ୍ଧାଧିକ ଭକ୍ଷଣ କରନ୍ତେ ତାଙ୍କ ତୃଷା ସହସା ନିର୍ବାପିତ ହେଲା ଏବଂ ଚକ୍ଷୁସହିତ

ସେ ନୂତନ ଶକ୍ତି ବିମଣ୍ଡିତ ହୋଇ ପଥ ଅତିକ୍ରମ କରି ଶେଷରେ "ଟହଲ" ଅଫିସରେ ପହଞ୍ଚିଲେ ଓ ସେହିଠାରେ ରାତି ଯାପନ କଲେ ।

ଏକ ବର୍ଷ ବରୁଆ ଟିମ୍ବର କମ୍ପାନୀରେ କାର୍ଯ୍ୟ କଲାପରେ, ଏ ସ୍ଥାନକୁ ଛାଡ଼ି ସେ ଗଲେ ଟାଟା । ସେଠାରୁ ଫେରି କଲିକତାର ଇଷ୍ଟର୍ଣ୍ଣ-ଇଣ୍ଡିଆ ରେଲୱେର ଲିଲୁଆସ୍ଥ ଓ୍ୱାର୍କସପ୍‌ରେ, ଏକ ଇଂରେଜ ଫୋରମ୍ୟାନ ନିକଟରେ ମାଳି କାମ କରୁଥିବା ବ୍ୟକ୍ତିର ସାହଚର୍ଯ୍ୟରେ ନିଯୁକ୍ତି ଲାଭ କଲେ । ମିଶନ୍ ବିଦ୍ୟାଳୟର ଛାଡ଼ିଥିବା ଅବସ୍ଥାରେ ଶ୍ରୀ ପ୍ରଧାନଙ୍କ ହୃଦୟରେ କବି ବୀଜର ଯେଉଁ ଅଙ୍କୁରୋଦ୍‌ଗମ ଘଟିଥିଲା, ତାହାର ଅଭିବୃଦ୍ଧି ଶତ ସାଂସାରିକ ନିଦାଯାତନା ଓ ଲାଞ୍ଛନା ମଧ୍ୟରେ ଅତି ସନ୍ତର୍ପଣରେ ଲୁକ୍‌କାୟିତ ଭାବରେ ଯେପରି ସାଧିତ ହେଉଥିଲା, ତାହାର ପରିପ୍ରକାଶ ପରବର୍ତ୍ତୀ ପର୍ଯ୍ୟାୟରେ ହେଲା ଏକ ମହାବିସ୍ମୟ ସୃଷ୍ଟିର ଆଧାର ।

କବି ଲେଖନୀରୁ ୧୯୨୮-୨୯ ମସିହାରେ ନିଃସୃତ ହେଲା "ଇନ୍ଦ୍ରରେଖା" ଆଧୁନିକ ସାହିତ୍ୟାକାଶରେ ଜାଜ୍ଜ୍ୱଲ୍ୟମାନ ଖଣ୍ଡଯୁଗୀୟ କାବ୍ୟ ତାରା ଠିକ୍ ଅରୁନ୍ଧତୀ ପରି । ଇନ୍ଦ୍ରରେଖା ରଚନାପରେ ପାଣ୍ଡୁଲିପି ସହିତ ଏକଦା ଲିଲୁଆରୁ ସ୍ୱଗୃହ ପ୍ରତ୍ୟାବର୍ତ୍ତନ ମାର୍ଗରେ, ଯୋବ୍ରାଠାରୁ କେନ୍ଦ୍ରାପଡ଼ା କେନାଲ୍‌ରେ ଲଞ୍ଚ ଯୋଗେ ଆସୁଥିବା ବେଳେ ଦୈବବଶତଃ ତାଙ୍କର ସାକ୍ଷାତ ହୁଏ ପଟ୍ଟାମୁଣ୍ଡାଇର ବିଶିଷ୍ଟ ଆଡ଼୍‌ଭୋକେଟ ଶ୍ରୀ ମାୟାଧର ଦାସଙ୍କ ସହିତ ।

ଶ୍ରୀ ଦାସଙ୍କ ସହିତ କବିଙ୍କର ପୂର୍ବପରିଚିତ ଥିଲା ତଥା ସେ "ଇନ୍ଦ୍ରରେଖା" କାବ୍ୟର ପାଣ୍ଡୁଲିପି ଦେଖି କବିଙ୍କ ପ୍ରତିଭାରେ ବିସ୍ମୟା-ଭିଭୂତ ହୋଇଥିଲେ । ତେଣୁ ଏହି ପ୍ରଚଣ୍ଡ ପ୍ରତିଭାର ପ୍ରଥମ ସ୍ୱାକ୍ଷରକୁ ସୂର୍ଯ୍ୟାଲୋକ ଦେଖାଇବା ପାଇଁ ତଥା 'ଇନ୍ଦ୍ରରେଖା' ରୂପୀ ଶୁଦ୍ଧ ସୁବର୍ଣ୍ଣକୁ ଉପଯୁକ୍ତ ଜହ୍ଲରୀ ବଣିକ ହସ୍ତରେ ପ୍ରଦାନ, କବିତାର ଯଥୋପଯୁକ୍ତ ମୂଲ୍ୟାୟନ କରିବା ପାଇଁ, ଦଶଦିନ ପରେ ତାଙ୍କୁ କଟକରେ ସାକ୍ଷାତ କରିବାକୁ କହିଲେ । କବି ଯଥା ସମୟରେ କଟକରେ ଶ୍ରୀ ଦାସଙ୍କ ନିକଟରେ ଉପସ୍ଥିତ ହୁଅନ୍ତେ, ତତ୍କାଳୀନ ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ସୁ-ପ୍ରତିଷ୍ଠିତ ହୋଇଥିବା ରମ୍ୟରଚନାକାର ତଥା ପୂର୍ଣ୍ଣଚନ୍ଦ୍ର

ଭାଷାକୋଷର ପ୍ରଣେତା ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ସହିତ ଶ୍ରୀ ଦାସ କବିଙ୍କୁ ପରିଚିତ କରାଇ ଦେଇ କହିଥିଲେ "ମୁଁ ଆପଣଙ୍କୁ ଏକ ଜୁଏଲ୍ ଦେଉଛି ।" ଏହି ସ୍ୱଳ୍ପ ପରିଚୟ ପ୍ରଦାନପରେ ଶ୍ରୀ ଦାସ ଚାଲିଯାଇଥିଲେ ଏବଂ କୋଠରି ଭିତରେ ଛିଡ଼ା ହୋଇ ରହିଥିଲେ କିଂକର୍ତ୍ତବ୍ୟବିମୂଢ଼ କବି ।

ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠିତ ଏକ ବରିଷ୍ଠ ପ୍ରତିଭା ନିକଟରେ ଅପ୍ରତିଷ୍ଠିତ କବି ସୁଲଭ ଦୈନ୍ୟ ନେଇ ଛିଡ଼ା ହୋଇଥିଲେ କବି । ଶ୍ରୀଯୁକ୍ତ ପ୍ରହରାଜଙ୍କ ମନରେ ଥିଲା ବୋଧହୁଏ ଏହି ଧାରଣା 'କ'ଣ ବା ଲେଖିଥିବ ଏ ଅର୍ବାଚୀନ ଯୁବକ ?' ତେଣୁ ସେହି ଦଣ୍ଡାୟମାନ ଅବସ୍ଥାରେ ପଚାରିଥିଲେ 'କ'ଣ ଲେଖିଛ ?' ମନରେ ବୋଧହୁଏ ଥିଲା ଏମିତି ଦୁଇପଦ ସୌଜନ୍ୟ-ମୂଳକ ବାକ୍ୟାଳାପ ପରେ ଯୁବକକୁ ବିଦାୟ ଦେଇ ଭାଷାକୋଷ କାର୍ଯ୍ୟରେ ନିୟୋଜିତ ରହିବେ । କବି ନିଜ ହାତ ବ୍ୟାଗ୍‌ରୁ ବାହାର କଲେ 'ଇନ୍ଦୁରେଖା'ର ପାଣ୍ଡୁଲିପି ।

'ହଁ, କ'ଣ ଲେଖିଛ ପଢ଼ ?' ଆଦେଶ କଲେ ପ୍ରହରାଜ ! କବି ପାଠ କଲେ 'ଇନ୍ଦୁରେଖା' କାବ୍ୟର ଷଷ୍ଠଯୁଗୀୟ ନିୟମାନୁସାରୀ ଇଷ୍ଟସ୍ତୁତି—

"ଜୟ ସଖୀ—ସୀତାପତି ହିପୁର ବିଜୟୀ
ବନିତା ସ୍ନେହୀ ଲକ୍ଷ୍ମଣ ସଙ୍ଗେ ସଦା ଥାଇ ।"

"ହଁ, ତା'ପରେ ?"

କବିତା ଶ୍ରବଣ ମାତ୍ରେ କାବ୍ୟକର୍ତ୍ତା ଯେ ଶ୍ରୀରାମଚନ୍ଦ୍ରଙ୍କୁ ସ୍ତୁତି କରୁଛନ୍ତି ତାହା ସ୍ପଷ୍ଟ ପ୍ରତିଭାତ ହୁଏ । ତେଣୁ ଶୀଘ୍ର ଆଗକୁ ବଢ଼ିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ଶ୍ରୀଯୁକ୍ତ ପ୍ରହରାଜ । କବି ସବିନୟରେ ଉକ୍ତ ପଦରେ ଶ୍ରୀରାମଚନ୍ଦ୍ର ଓ ଶିବଙ୍କୁ ସ୍ତୁତି କରାଯାଇଥିବାର ଜଣାଇଲେ । ଶ୍ଳେଷାଳଙ୍କାରରେ ରଚିତ ପଦର ଅର୍ଥ ଯୁକ୍ତିଯୁକ୍ତ ତଥା ବୋଧଗମ୍ୟ ହେବା ଦଣ୍ଡାୟମାନ ଥିବା କବିଙ୍କୁ ଉପବେଶନ କରିବା ପାଇଁ ନିର୍ଦ୍ଦେଶ ଦେଇ ଶ୍ରୀଯୁକ୍ତ ପ୍ରହରାଜ ସ୍ୱୟଂ ଏକ ଚଉକି ଉପରେ ଉପବେଶନ କଲେ । କାବ୍ୟର ପଦ ପରେ ପଦ ଗାଇ ଚାଲିଲେ କବି ତଥା ବ୍ୟାଖ୍ୟା ମଧ୍ୟ

କରିଗ୍ଲଲେ । ଆମ୍ଭୃଚଭୋର ହୋଇ ଶୁଣୁଥିଲେ ଶ୍ଳେଷଯୁକ୍ତ ଅଳଙ୍କାର ଶ୍ରୀଯୁକ୍ତ ପ୍ରହରାଜ ।

"ଉଷା ରାଧିକା ଧନ୍ୟ ଧିରାସାର
ଉଚ ହସ ନାଶନା ସହଚର ।"

ସର୍ବତୋଭଦ୍ର ଅଳଙ୍କାର ବର୍ଣ୍ଣନା ପ୍ରସଙ୍ଗ ଉପସ୍ଥାପିତ କଲେ କବି, ଯାହାକି ପ୍ରାଚୀନ ରୀତିଯୁଗୀୟ କାବ୍ୟରେ ପ୍ରାୟତଃ ପରିଦୃଷ୍ଟ ହୁଏ ନାହିଁ । ଯଥା—

"ବର ହେବ ବହେ ରବ ଆମ୍ଭର ସଖିର
ରସ ବହେ ହେବ ଶର ସେ ଫୁଲ ଶରର ।
ହେବ ରସ ସର ବହେ କାମେ ହେଲେ ରତ
ବହେ ସଦା ଦାସ ହେବ ମାନ କଲେ ଜାତ ।
ସର୍ବ ତୋ' ଭଦ୍ର ଏ ପ୍ରାନ୍ତ ଷଡ଼ାକ୍ଷର ଚ୍ୟୁତେ
ସଖି ଭାବେ ବିରଚିତ ଭାବ ବିରଚିତେ ।"

ଏହି ପଦର ଶ୍ରବଣ ମାତ୍ରେ ବିସ୍ମୟାଭିଭୂତ ଶ୍ରୀଯୁକ୍ତ ପ୍ରହରାଜ ଶିବଯାଦୁର ଅପୂର୍ବ ଯାଦୁକର ଶ୍ରୀ ଗୋଲୋକଚନ୍ଦ୍ର ପ୍ରଧାନଙ୍କୁ ଚକ୍ଷୁ ସମ୍ମୁଖରେ ଦେଖୁଥିଲେ ମଧ୍ୟ, ସ୍ୱ-ଚକ୍ଷୁକୁ ସେ ବିଶ୍ୱାସ କରିପାରୁ ନ ଥିଲେ ।

'ସତରେ ତମେ ଏହାକୁ ଲେଖିଛ ନା କେଉଁଠାରୁ ଟିପିଆଣିଛ ?' ବିସ୍ମୟ ବିଜଡ଼ିତ କଣ୍ଠରେ ପ୍ରଶ୍ନ କଲେ ଶ୍ରୀଯୁକ୍ତ ପ୍ରହରାଜ । ଅବଶ୍ୟ ଏ ପ୍ରଶ୍ନ କୌଣସି ଉତ୍ତରର ଅପେକ୍ଷା ରଖୁନଥିଲା । ଏହି ପ୍ରଶ୍ନ ଥିଲା ସ୍ୱୟଂ ଉତ୍ତରଦାୟୀ । ଶ୍ରୀଯୁକ୍ତ ପ୍ରହରାଜ ଏମିତି ଏକ ପ୍ରଚଣ୍ଡ ପ୍ରତିଭାକୁ ହସ୍ତଚ୍ୟୁତ କରିବା ପାଇଁ, ସେହି ମୁହୂର୍ତ୍ତରୁ ଆଉ ପ୍ରସ୍ତୁତ ନ ଥିଲେ । ଲାଲୁଆ ଟିମ୍ବର କମ୍ପାନୀର ଶିମିଳିପାଳ ଜଙ୍ଗଲ ମଧ୍ୟରେ ପ୍ରତିଷ୍ଠିତ ସୌରଭଦାୟୀ ମଲ୍ଲୀକୁ ନିଜ ନିକଟରେ 'ରହିଯିବାର ସମସ୍ତ ବନ୍ଦୋବସ୍ତ କରିଦେଇ କମ୍ପାନୀରୁ ତ୍ୟାଗପତ୍ର ଦେବାପାଇଁ ପରାମର୍ଶ ପ୍ରଦାନ କରିଥିଲେ । ଆର୍ଥିକ ଦୁର୍ଗତି ମଧ୍ୟରେ ଗତି କରୁଥିବା ତରୁଣ କବିଙ୍କ ପାଇଁ ଏହାଥିଲା ବିଭୂଦତ୍ତ ଆଶୀର୍ବାଦ ପରି ।

ଫଳତଃ ଟିମ୍ବର କମ୍ପାନୀରୁ ତ୍ୟାଗପତ୍ର ଦେଇ କବି ଶ୍ରୀଯୁକ୍ତ ପ୍ରହରାଜଙ୍କ ନିକଟରେ ରହିଗଲେ ଏବଂ ଭାଷାକୋଷ ରଚନାରେ ପ୍ରହରାଜଙ୍କ

ସହିତ କାର୍ଯ୍ୟ କରିବାକୁ ଲାଗିଲେ । ଭାଷାକୋଷରେ କାର୍ଯ୍ୟକରି ଉପାର୍ଜ୍ଜନ କରୁଥିବା ପାରିଶ୍ରମିକ କବିଙ୍କ ପାଇଁ ଯଥେଷ୍ଟ ନ ଥିଲା । ତେଣୁ ଅର୍ଥୋପାର୍ଜନ ପାଇଁ ଟିଉସନ୍ କରି ସେ ମାସିକ ପ୍ରାୟ ୧୦୦ ଟଙ୍କା ରୋଜଗାର କରୁଥିଲେ । ଟିମ୍ବର କମ୍ପାନୀ ଚାକିରିକୁ ତ୍ୟାଗକରି, ଭାଷାକୋଷରେ କାର୍ଯ୍ୟ କରିବା ପଛରେ ଅର୍ଥୋପାର୍ଜନ କବିଙ୍କ ଏକମାତ୍ର ଲକ୍ଷ୍ୟ ନଥିଲା । ସ୍ୱୀୟ ମାନସ କନ୍ୟା 'ଇନ୍ଦୁରେଖା' ପ୍ରକାଶିତ ହୋଇ ସହୃଦୟ ସମାଜର ଦୃଷ୍ଟି ଆକର୍ଷଣ କରୁ ଏହା ଥିଲା ଭାଷାକୋଷରେ କାର୍ଯ୍ୟ କରିବା ଅନ୍ତରାଳରେ କବିଙ୍କ ଅଭିଳାଷ । ମାତ୍ର ଏତାଦୃଶ ସ୍ୱମନୋବୃତ୍ତିକୁ କପରି ବା ସ୍ପଷ୍ଟ ଭାବରେ ପ୍ରହରାଜଙ୍କ ନିକଟରେ ପ୍ରକାଶ କରିବେ । ଏହା ଥିଲା କବିଙ୍କ ପାଇଁ ଏକ ବିରାଟ ସମସ୍ୟା । ତଥାପି ଅନେକ ସମୟରେ ପ୍ରାସଙ୍ଗିକତା ପ୍ରତି ଦୃଷ୍ଟି ଦେଇ ସ୍ୱୀୟ ଅଭିପ୍ରାୟକୁ କବି ଶ୍ରୀଯୁକ୍ତ ପ୍ରହରାଜଙ୍କ ସମ୍ମୁଖରେ ଉପସ୍ଥାପିତ କରିଥିଲେ ।

ଆଧୁନିକତାର ରୂପରେଖରେ ସଜ୍ଜିତ ସାହିତ୍ୟ ରାଜ୍ୟରେ 'ଇନ୍ଦୁରେଖା' ପରି ରୀତିଯୁଗୀୟ ଗ୍ରନ୍ଥରେ ଗଢ଼ା କାବ୍ୟକୁ କେଉଁ ଲାଭ ଆଶାରେ, କେଉଁ ସୁସ୍ଥ ମସ୍ତିଷ୍କସମ୍ପନ୍ନ ବ୍ୟବସାୟୀ ବା ପ୍ରକାଶକ ପ୍ରକାଶନ କରିବା ପାଇଁ ଆଗଭର ହେବ ? ରୀତିଯୁଗରେ ରୀତିସାହିତ୍ୟ ରାଜଦରବାରରେ ଆଲୋଚିତ, ସମାଲୋଚିତ ବା ପୁରସ୍କୃତ ହେଉଥିଲା । ତତ୍କାଳୀନ ରାଜନ୍ୟ ମଣ୍ଡଳ ଥିଲେ ଏହାର ପୃଷ୍ଠପୋଷକ । 'ଇନ୍ଦୁରେଖା' ଯଦିଓ ଆଧୁନିକ ସାହିତ୍ୟ ରାଜ୍ୟରେ ଜନ୍ମଲାଭ କରିଥିଲା, ତଥାପି ତାର ଜନ୍ମଜାତକ ପ୍ରସ୍ତୁତ ହୋଇଥିଲା ସେହି ରାଜ ଦରବାରରେ । ଶ୍ରୀ ପ୍ରହରାଜ ନିଜ ସହିତ କବିଙ୍କୁ ନେଇ ଯାଇଥିଲେ ତଦାନୀନ୍ତନ ବୌଦରାଜା ଶ୍ରୀ ଶ୍ରୀ ନାରାୟଣ ମୋହନ ଦେଙ୍କ ନିକଟକୁ । କାବ୍ୟ ପଠାନ୍ତେ ସେ ମହାଶୟ କୌଣସି ବ୍ୟାବସାୟିକ ମନୋବୃତ୍ତି ନରଖି ଏ କାବ୍ୟ ପ୍ରକାଶନର ସମସ୍ତ ଭାର ନିଜ କାନ୍ଧକୁ ନେଇଥିଲେ । ଭାଷାକୋଷରେ କାର୍ଯ୍ୟ କରୁଥିବା ସମୟରେ କବିଙ୍କ ପିତା, ମାତା ତଥା ପତ୍ନୀଙ୍କର ମୃତ୍ୟୁ ହୁଏ ।

ବାରବର୍ଷର ବୈବାହିକ ଜୀବନ ମଧ୍ୟରେ କବିଙ୍କ ପ୍ରଥମା ପତ୍ନୀ ଏକ ପୁତ୍ର 'ଦେବେନ୍ଦ୍ର' ଓ ଏକ କନ୍ୟା 'କାଞ୍ଚନ'କୁ ପୃଥିବୀକୁ ଆଣି ଇହଲୀଳା ସାଙ୍ଗ କରନ୍ତି । ଏହାର ଦୁଇ ବର୍ଷପରେ କବି ୩-ବର୍ଷ ବୟସରେ

ଦ୍ୱିତୀୟ ବିବାହ କରନ୍ତି ପଞ୍ଚୁପାଣ୍ଡବ ନିକଟସ୍ଥ ଡେଗଡ଼ିହ ଗ୍ରାମର ଖ୍ୟାତନାମା ଜମିଦାର ଶ୍ରୀ ହଂଶାମଣି ଜେନାଙ୍କ କନ୍ୟା ରମାଦେବୀଙ୍କୁ । ଏହାଙ୍କ ମାତାଙ୍କ ନାମ ଥିଲି କୁମୁଦିନୀ ଜେନା । ପୌରାଣିକ ଆଖ୍ୟାୟିକା ଅଛି ପଞ୍ଚପାଣ୍ଡବ ତଥା ମାତା କୁନ୍ତୀ ଏହି ସ୍ଥାନରେ ଡେରା ପକାଇ ବନବାସର କିଛିକାଳ ଅତିବାହିତ କରିଥିଲେ ଏବଂ ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲି 'ଓଳକଣା'ରେ ଅବସ୍ଥାନ କରୁଥିବା 'ବିଦୁର'ଙ୍କୁ ସାକ୍ଷାତ କରିବା । ଏହି ଆଖ୍ୟାୟିକାକୁ ଐତିହାସିକତା ଦେବା ପାଇଁ ଅଦ୍ୟାପି ଓଳକଣାରେ ବିଦୁରଙ୍କ ମନ୍ଦିର ଏବଂ ପଞ୍ଚୁପାଣ୍ଡବଙ୍କ ଗ୍ରାମ ନିକଟସ୍ଥ ପାହାଡ଼ରେ ପଞ୍ଚ-ପାଣ୍ଡବଙ୍କ ପ୍ରତିମୂର୍ତ୍ତି ଅବସ୍ଥାପିତ । ଏହିଠାରେ ମଧ୍ୟ ପାଣ୍ଡବମାନଙ୍କ ଅସ୍ତ୍ରଗୁରୁ ଆଚାର୍ଯ୍ୟ ଦ୍ରୋଣଙ୍କ ପ୍ରତିମୂର୍ତ୍ତି ମଧ୍ୟ ଅବସ୍ଥାପିତ । କବିଙ୍କ ଏହି ଦ୍ୱିତୀୟ ବିବାହ ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଆଦେଶାନୁସାରେ ସାଧିତ ହୋଇଥିଲି ।

ବୌଦରାଜାଙ୍କଠାରୁ ବିଦାୟ ନେଇ କଟକ ଆସୁଥିବା ସମୟରେ କବିଙ୍କର ସାକ୍ଷାତ ହେଲା ଆଠମଲ୍ଲିକ ରାଜ୍ୟର ରାଜା କିଶୋରଚନ୍ଦ୍ର ଦେବଙ୍କ ସହିତ । ରାଜା କବିଙ୍କ ଅସାଧାରଣ ପାଣ୍ଡିତ୍ୟର ସୂଚନା 'ଇନ୍ଦୁରେଖା' କାବ୍ୟରୁ ପ୍ରାପ୍ତ ହୋଇ, ଏହାର ସାର୍ବଜନୀନ ଚର୍ଚ୍ଚା ପାଇଁ ନିର୍ଦ୍ଦେଶ ଦେଇ, ବିଦ୍ବଜ୍ଜନ ସମ୍ମୁଖରେ ଏକ ବିଶେଷ ଦରବାରରେ କବିଙ୍କ ମୁହଁରୁ ଏହାର ବ୍ୟାଖ୍ୟା ଶୁଣି, ସେହି ଦରବାରରେ କବିଙ୍କୁ 'ଦ୍ୱିତୀୟ ଭଞ୍ଜ' ଉପାଧିରେ ଭୂଷିତ କରିଥିଲେ । ଉପଯୁକ୍ତ କାବ୍ୟାମୋଦୀ, ରସଗ୍ରାହୀ, ସହୃଦୟ ପାଠକର ଆଲୋଚନା ବା ସମାଲୋଚନା କବିଙ୍କୁ ବହୁ ଭାବରେ ଅନୁପ୍ରାଣିତ କଲା ଯାହାର ଫଳଶ୍ରୁତି ସ୍ୱରୂପ ଜନ୍ମନେଲା କବି ମାନସର ଶେଷ ତଥା ଦ୍ୱିତୀୟ ରୀତିକାବ୍ୟ 'ସତ୍ୟଭାମା', ଯାହାକି ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ଓ ପୁରସ୍କୃତ ମଧ୍ୟ ।

'ଇନ୍ଦୁରେଖା' କାବ୍ୟର ରଚନା ଅନ୍ତରାଳରେ ଆଳିର ତଦାନୀନ୍ତନ ରାଜା ବ୍ରଜସୁନ୍ଦର ଦେବଙ୍କର ଥିଲା ପ୍ରଚ୍ଛନ୍ନ ପ୍ରେରଣା । ମିଶନ ସ୍କୁଲରେ ପ୍ରବେଶିକା ପରୀକ୍ଷା ପୂର୍ବରୁ କଟକ ଶ୍ରୀରାମଚନ୍ଦ୍ର ଭବନର ଶିଳାନ୍ୟାସ ଉତ୍ସବରେ ଯୋଗ ଦେଇଥିଲେ ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦେବ । ଭାଷଣ ପ୍ରସଙ୍ଗରେ ସେଦିନ ତତ୍କାଳୀନ ପରିସ୍ଥିତିରେ ଆଧୁନିକ ସାହିତ୍ୟର ପ୍ରବଳ ଚର୍ଚ୍ଚା ଦେଖି ସେ ନିଜ ମତାମତ ପ୍ରକାଶ କରିଥିଲେ ଯେ କେହି କବିସମ୍ରାଟ ଉପେନ୍ଦ୍ର

ଭଞ୍ଜଙ୍କ ଭଳି କାବ୍ୟ ରଚନା କରିପାରୁ ନାହାନ୍ତି । ସେହି ସଭାରେ ଜଣେ ଅନାମଧେୟ ଶ୍ରୋତା ଭାବରେ କବି ସ୍ୱୟଂ ଉପସ୍ଥିତ ଥିଲେ । ବ୍ରଜସୁନ୍ଦର ଦେବଙ୍କର ଏ ପ୍ରକାର ମନ୍ତବ୍ୟ ସତେ ଯେମିତି ତାଙ୍କ ପାଇଁ ଥିଲା ଏକ ପ୍ରଚ୍ଛନ୍ନ ଆହ୍ୱାନ । ଅଗଣିତ ଶ୍ରୋତାଙ୍କ ମଧ୍ୟରେ ସେହିଦିନ ସେହି ସ୍ଥାନରେ କବିଙ୍କ ଚିତ୍ତବୃତ୍ତିରେ ବଦ୍ଧମୂଳ ସଂକଳ୍ପ ଜନ୍ମିଥିଲା ଯେ ସେ ହିଁ ଭଞ୍ଜାନୁସାରୀ ରୀତିକାବ୍ୟ ରଚନା କରିବେ । ପରିଶେଷରେ 'ଇନ୍ଦୁରେଖା' ରଚନା କରି ସେ ସ୍ପଷ୍ଟ ପ୍ରମାଣ କରିଦେଲେ ଯେ କବି ସମୟର ଦାସ ନୁହେଁ ସବୁ ସମୟର ଊର୍ଦ୍ଧ୍ୱରେ ରହି ସେ ଲେଖମା ସୃଜନା କରିପାରେ ।

ଭାଷାକୋଷରେ ଦୀର୍ଘ ତେରବର୍ଷ କାର୍ଯ୍ୟ କରିବାପରେ ସେଠାରୁ ବିଦାୟ ନେଇଥିଲେ । ଭାଷାକୋଷର ସଂକଳନ ସରିଥାଏ, ମାତ୍ର ପରିଶିଷ୍ଟ ହୋଇ ନଥାଏ । ଏହି ସମୟରେ ଶ୍ରୀଯୁକ୍ତ ପ୍ରହରାଜଙ୍କର ମହାପ୍ରୟାଣ ହେଲା । ଠିକ୍ ଏହି ସମୟକୁ କବିଙ୍କ ପରିଚୟ ଘଟେ ଓଡ଼ିଶାର ପ୍ରଥମ ହୋମିଓପ୍ୟାଥିକ୍ ଡାକ୍ତର ଅଭିନ୍ନ ଚନ୍ଦ୍ର ରାଓଙ୍କ ସହିତ । ସେ ସମୟକୁ ଶ୍ରୀଯୁକ୍ତ ରାଓ ହୋମିଓପ୍ୟାଥିକ ଚିକିତ୍ସା ସମ୍ପର୍କୀୟ ପୁସ୍ତକ ରଚନାରେ ବ୍ୟସ୍ତ ଥାନ୍ତି । କବି ତାଙ୍କଠାରୁ ହୋମିଓପ୍ୟାଥିକ ଚିକିତ୍ସା ମଧ୍ୟ ଶିକ୍ଷା କଲେ, ଯାହାକି ଭାଷାକୋଷରୁ ଅବ୍ୟାହତି ନେବା ପରେ ତାଙ୍କୁ ପ୍ରଭୂତ ସହାୟତା ପ୍ରଦାନ କରିଥିଲା । କବି କିଛିକାଳ ମଧ୍ୟ ସମ୍ପୂର୍ଣ୍ଣ ଭାବେ ଏକ ହୋମିଓ-ପ୍ୟାଥିକ୍ ଚିକିତ୍ସକ ରୂପେ ନିଜକୁ ପ୍ରତିଷ୍ଠିତ କରାଇ ପାରିଥିଲେ । ଏହାପରେ ୧୯୪୬-୪୭ ଶିକ୍ଷା ବର୍ଷରେ ଅସୁରେଶ୍ୱର ଗ୍ରାମରେ ନୂତନ ଭାବରେ ଏକ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠିତ ହେଲା ।

କବି ଏହି ବିଦ୍ୟାଳୟରେ ଶିକ୍ଷକ ଭାବରେ ଯୋଗଦାନ କଲେ । ସ୍ୱଭାବସୁଲଭ କବିତ୍ୱ ତଥା ଭାଷାକୋଷର ଅଭିଜ୍ଞତା କବିଙ୍କୁ ଏକ ଦକ୍ଷ ସାହିତ୍ୟ ଶିକ୍ଷକ ଭାବରେ ଗଢ଼ି ତୋଳିଲା । ଛାତ୍ରବତ୍ସଳତାର ସେ ଥିଲେ ଏକ ନିଚ୍ଛକ ପ୍ରତିଛବି, ଯାହାକି ତାଙ୍କର ଛାତ୍ରସମାଜ ମୁକ୍ତକଣ୍ଠରେ ଅଦ୍ୟାବଧି ସ୍ୱୀକାର କରନ୍ତି । ଶିକ୍ଷକ ଭାବରେ କବିଙ୍କ ଦଣ୍ଡବିଧାନ ପ୍ରଣାଳୀ ଥିଲା ସମ୍ପୂର୍ଣ୍ଣ ଅଭିନବ ଓ ନିଜସ୍ୱ । କୌଣସି ଛାତ୍ର ଶ୍ରେଣୀଗୃହରେ ଅମନୋଯୋଗୀ ହେଲେ କିମ୍ବା ଉତ୍ତର ଦେବାକୁ ଅକ୍ଷମ ହେଲେ କବି

ଅନ୍ୟ ଏକ ଗ୍ରନ୍ଥକୁ ଉତ୍ତର ଦେଇ ନଥିବା ଗ୍ରନ୍ଥକୁ ଦାନ୍ତ ଦେଖାଇବାକୁ ବା ଖଟ୍ଟରେଇ ହେବାକୁ କହୁଥାନ୍ତି ।

ଏହା ଥିଲା କବିଙ୍କ ମାନସିକ ବିରକ୍ତି ପ୍ରକାଶର ଏକମାତ୍ର ମାଧ୍ୟମ । ଗ୍ରନ୍ଥକୁ ଶାରୀରିକ ଦଣ୍ଡବିଧାନ କ୍ଷେତ୍ରରେ ସେ ଥିଲେ ମାନସିକ କୃପଣ । ସ୍ୱୀୟବୃତ୍ତି ପ୍ରତି ଏକାନ୍ତ ନିଷ୍ଠା, ଗ୍ରନ୍ଥଗ୍ରନ୍ଥୀଙ୍କ ପ୍ରତି ସନ୍ତାନ ସୁଲଭ ସ୍ନେହ, ସମୟାନୁବର୍ତ୍ତିତା, ଉପରିସ୍ଥଙ୍କ ପ୍ରତି ଯଥୋପଯୁକ୍ତ ସମ୍ମାନ, ବନ୍ଧୁବର୍ଗଙ୍କ ପ୍ରତି ସାଦର-ସମ୍ଭାଷଣ, ଶ୍ରେଣୀ ଗୃହ ମଧ୍ୟରେ ବିଷୟବସ୍ତୁରେ ଶାଳୀନତା, ସରଳ, ମଧୁର ବ୍ୟବହାର, ସର୍ବୋପରି ସୁଖପ୍ରଦାୟୀ ବାକ୍ୟପ୍ରୟୋଗ ହେତୁ କବିଙ୍କ ଶିକ୍ଷକ ଜୀବନ ବହୁଜନାଦୃତ ହୋଇଥିଲା । ସେ ୨୧ । ୫ । ୬୯ ତାରିଖରେ ଏକ ସଫଳ ଶିକ୍ଷକ ଭାବରେ ନିଜ କର୍ମମୟ ଜୀବନରୁ ଅବସର ଗ୍ରହଣ କରିଥିଲେ । 'ଇନ୍ଦୁରେଖା' ବ୍ୟତୀତ ତାଙ୍କର ଅନ୍ୟ ସମସ୍ତ କାବ୍ୟାବଳୀ ପ୍ରାୟତଃ ଏହି ଶିକ୍ଷକ ଜୀବନ ମଧ୍ୟରେ ରଚିତ । କବିଙ୍କ ଅପ୍ରକାଶିତ ଶେଷ କାବ୍ୟ 'ଦମ୍ଭଦଳନ' ଅବସର ଜୀବନରେ ହିଁ ରଚିତ । ନିମ୍ନରେ କବିଙ୍କ ରଚନାବଳୀର କ୍ରମାନୁସାରୀ ସୂଚୀ ପ୍ରଦତ୍ତହେଲା ।

(୧) ଇନ୍ଦୁରେଖା, (୨) ଦକ୍ଷିଣା, (୩) ଅର୍ଜୁନ, (୪) ଦେବକୂଟ, (୫) ଶାଣ୍ଡିଲ, (୬) ସତ୍ୟଭାମା, (୭) ତୁଳସୀ ବିଳାସ, (୮) ରାକ୍ଷସୀ କନ୍ୟା, (୯) ଶେଷହସ, (୧୦) ନମେ ଭକ୍ତ ପ୍ରଣଶ୍ୟତି, (୧୧) କୁସୁମ୍ଭି, (୧୨) ଶ୍ରୀ ରଘୁନାଥ, (୧୩) ଦମ୍ଭଦଳନ । ଏ ରଚନାଗୁଡ଼ିକ ପୌରାଣିକ ବିଷୟବସ୍ତୁ ଉପରେ ଆଧାରିତ କାବ୍ୟ ଏବଂ ଖଣ୍ଡ କାବ୍ୟ । ଏତଦ୍-ବ୍ୟତୀତ କବି "ଯୋଗଦର୍ପଣ" ଓ "ମହାପୁରୁଷ ଅରକ୍ଷିତ ଦାସ" ନାମକ ଦୁଇଖଣ୍ଡ ଗଦ୍ୟପୁସ୍ତକ ମଧ୍ୟ ରଚନା କରିଥିଲେ । ଯୋଗ ଦର୍ପଣର ସ୍ୱତ୍ୱକୁ କବି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟକୁ ବିକ୍ରୟ କରି ଦେଇଥିଲେ ଯେତେବେଳେ ଡଃ କାହ୍ନୁଚରଣ ମିଶ୍ର ଓଡ଼ିଆ ବିଭାଗର ମୁଖ୍ୟ ଥିଲେ । ଅନୁସନ୍ଧାନରୁ ଜଣାଯାଏ ଏପର୍ଯ୍ୟନ୍ତ ତାହା ପ୍ରକାଶିତ ହୋଇ ନାହିଁ । ମାତ୍ର ମହାପୁରୁଷ ଅରକ୍ଷିତ ଦାସ ଓଳାଶୁଣୀ ମଠଦ୍ୱାରା ପ୍ରକାଶିତ । ଏତଦ୍ ବ୍ୟତୀତ କବିପ୍ରଣୀତ "ଶ୍ରୀକୃଷ୍ଣ" କାବ୍ୟର ପାଣ୍ଡୁଲିପି ସ୍ୱଅସାବଧାନତା ବଶତଃ ନଷ୍ଟ ହୋଇ ଯାଇଛି ।

"ଇନ୍ଦୁରେଖା" କାବ୍ୟ ବୈଦରାଜା ଶ୍ରୀଯୁକ୍ତ ନାରାୟଣ ପ୍ରସାଦ ଦେଙ୍କ ଦ୍ୱାରା ପ୍ରଥମେ ୧୯୩୪ ମସିହାରେ ପ୍ରକାଶିତ ହୋଇଥିଲା ଏବଂ ପରେ ଶ୍ରୀ ଉମାଚରଣ ମହାନ୍ତି, କଟକ ପବ୍ଲିସିଂ ହାଉସ୍, ବାଲୁବଜାରଙ୍କ ଦ୍ୱାରା ପ୍ରକାଶିତ ହେଲା। "ଦକ୍ଷିଣା" ଦଳିତ ଜାତିସଂଘ ଦ୍ୱାରା ପ୍ରକାଶିତ। "ଅର୍ଜ୍ଜୁନ" ୧୯୫୯ ମସିହାରେ ଅସୁରେଶ୍ୱରର ରମାଦେବୀଙ୍କ ଦ୍ୱାରା ପ୍ରକାଶିତ। "ଦେବକୂଟ" ୧୯୭୨ ମସିହାରେ ଶ୍ରୀମତୀ ଲତିକା ସାମଲ ଗ୍ରା: ବାହାଦୂର ନଗର, ପୋ: ସ୍ୱରେଲଙ୍ଗଳ, ଜ: କଟକଙ୍କ ଦ୍ୱାରା ପ୍ରକାଶିତ। "ସତ୍ୟଭାମା" ୧୯୬୩ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ଓ ପୁରସ୍କୃତ। "ତୁଳସୀ ବିଳାସ" ୧୯୭୦ ମସିହାରେ ଶିବଳକଣା ଉଚ୍ଚ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ପଦ୍ମନାଭ ମହାନ୍ତିଙ୍କ ଦ୍ୱାରା ପ୍ରକାଶିତ। ଶ୍ରୀ ରଘୁନାଥ କାବ୍ୟଟି ୧୯୮୨ ମସିହାରେ ପ୍ରମିଳା ସାହୁ, ଗ୍ରା:—ଚଇଁଠପୁର, ପୋ:—ନାରଜଙ୍ଗ, କଟକଙ୍କ ଦ୍ୱାରା ପ୍ରକାଶିତ। ଏତଦ୍‌ବ୍ୟତୀତ କବିଙ୍କ ଅନ୍ୟ ସମସ୍ତ କାବ୍ୟ ଅଦ୍ୟାବଧି ପାଣ୍ଡୁଲିପି ଅବସ୍ଥାରେ ଅନିଶ୍ଚିତ ଭବିଷ୍ୟତକୁ ଅପେକ୍ଷା କରି ପଡ଼ିରହିଛି। କବିଙ୍କୁ ଦ୍ୱିତୀୟ ଭଞ୍ଜର ପ୍ରତିଷ୍ଠା ଆଣି ଦେଇଥିବା ପ୍ରଥମ ପ୍ରକାଶିତ କାବ୍ୟ ଇନ୍ଦୁରେଖା ୧୯୨୮-୨୯ ମସିହାରେ ରଚିତ ଏବଂ କବି ଲେଖଣୀର ଶେଷ ସୃଷ୍ଟି ଚନ୍ଦ୍ରାନନ ୧୯୮୭ ମସିହାରେ ରଚିତ। ତେଣୁ ଏହି ୧୯୨୮ ମସିହାଠାରୁ ୧୯୮୭ ମସିହା ମଧ୍ୟରେ ଏଯାବତ୍ ଅକ୍ଷତ ଅବସ୍ଥାରେ ଥିବା ସମସ୍ତ କାବ୍ୟ (ଶ୍ରୀକୃଷ୍ଣ ବ୍ୟତୀତ) କବି ରଚନା କରିଅଛନ୍ତି।

ଯଦିଓ କବି ପ୍ରାରମ୍ଭିକ ଅବସ୍ଥାରେ ରୀତିଯୁଗୀୟ କାବ୍ୟାଦର୍ଶ ଦ୍ୱାରା ଅନୁପ୍ରାଣିତ ହୋଇ କାବ୍ୟ ରଚନାର ଶୁଭାରମ୍ଭ କରିଥିଲେ, ମାତ୍ର ତାଙ୍କ ସମସ୍ତ କାବ୍ୟରେ ସେ ସେହି ଶୈଳୀକୁ ବଜାୟ ରଖିପାରି ନାହାନ୍ତି। "ଇନ୍ଦୁରେଖା" ଓ "ସତ୍ୟଭାମା" ରୀତି-ଶୈଳୀର ସଫଳ ଅନୁସୃତି ଏବଂ ଏ ଉଭୟ ମଧ୍ୟ କାବ୍ୟ ପଦବାଚ୍ୟ। ଏତଦ୍‌ବ୍ୟତୀତ ଅନ୍ୟ ସମସ୍ତ ରଚନା ଖଣ୍ଡକାବ୍ୟ ପର୍ଯ୍ୟାୟବାଚୀ। ଏ ସମସ୍ତ ଖଣ୍ଡକାବ୍ୟରେ ରାଧାନାଥ ପ୍ରବର୍ତ୍ତିତ ଶୈଳୀହିଁ ଅନୁଧୃତ ହୋଇଛି। ଏହା ସ୍ପଷ୍ଟ ପ୍ରମାଣିତ କରେ ଯେ କବି ଉପରେ ଯୁଗରୁଚିର ପ୍ରଭାବ କେତେ ଶକ୍ତିଶାଳୀ। କବି ରଚନା କଳ୍ପ-ଲୋକରେ ବିଚରଣ କରି ଇତିହାସ ଗର୍ଭରୁ ରୀତିଯୁଗର ଏକ ନିଚ୍ଛକ

ପ୍ରତିଛବିକୁ ଦ୍ରୁତ ପାଠକ ସମ୍ମୁଖରେ ଉପସ୍ଥାପିତ କରିପାରିଲେ ମାତ୍ର ଶବ୍ଦଗୁମ୍ଫିତ ଅଳଙ୍କାରର ଦୁର୍ବାର ଭାରକୁ ତାଙ୍କର ସମସ୍ତ କାବ୍ୟ ନାୟିକା ଉପରେ ଲଦିଦେଇ ପାରିଲେ ନାହିଁ । ଏସବୁ ସତ୍ତ୍ୱେ ବିଶିଷ୍ଟ ଭଙ୍ଗୀର ରଚନାର ବୈଶେଷ୍ଟ୍ୟ ଏହି ଯେ ଆଧୁନିକ ଯୁଗର ସମସ୍ତ ଯାନ୍ତ୍ରିକ ଘର୍ଘର ନାଦ କବି ଚେତନାକୁ ସ୍ପର୍ଶ କରିନାହିଁ, ପରନ୍ତୁ ଏ ସବୁକୁ ଅନାୟାସରେ ଫାଙ୍କି ଦେଇ ସେ କଳ୍ପନାଲୋକରେ ବିଚରଣ କରି "ଇନ୍ଦୁରେଖା" ଓ "ସତ୍ୟଭାମା" କାବ୍ୟଦ୍ୱୟ ଆଧୁନିକ ଯାନ୍ତ୍ରିକ ସାହିତ୍ୟ ସମାଜକୁ ପ୍ରଦାନ କରିଛନ୍ତି, ଯାହା ପ୍ରାୟତଃ ଦୁର୍ଲଭ ।

ଯୁଗାନୁଶ୍ରୟୀ ସାହିତ୍ୟ ରଚନା କରିବାରେ ଅସୁବିଧାର ମାତ୍ରା ଯେତିକି କମ୍, ଯୁଗରୁଚିକୁ ଉପେକ୍ଷା କରି, ଏକ ଭିତ୍ତିଶୂନ୍ୟ ଶୂନ୍ୟରେ ଅନ୍ୟଯୁଗର ସାହିତ୍ୟ ରଚନା କରିବା ସେତିକି ଆୟାସସାଧ୍ୟ । ତେଣୁ କବି ଶ୍ରୀଯୁକ୍ତ ପ୍ରଧାନ ବାସ୍ତବିକ୍ ପ୍ରଶଂସାର୍ହ । ମାତ୍ର ସବୁଠାରୁ ଦୁଃଖର ବିଷୟ ଏ ସାହିତ୍ୟର ପର୍ଯ୍ୟାପ୍ତ ଆଲୋଚନା ଏଯାବତ୍ ସମ୍ଭବ ହୋଇ ନାହିଁ । ଆଧୁନିକତାର ରଥଚକ୍ର ତଳେ କେବଳ ପ୍ରଧାନଙ୍କ ସାହିତ୍ୟ ନୁହେଁ, ତଦନୁସାରୀ ଅନ୍ୟ କେତେକ ସାହିତ୍ୟିକ କୃତି ନିଜସ୍ୱ ପରିଚୟ ହରାଇଛନ୍ତି ଏଥିରେ ଦ୍ୱିମତ ନାହିଁ । ଅଳ୍ପ କେତେକ ସ୍ଥଳରେ କବିଙ୍କୁ ସମ୍ବର୍ଦ୍ଧନା ବା ତାଙ୍କ ସାହିତ୍ୟ କୃତିର କିୟଦ୍ ଅଂଶ ବିଭିନ୍ନ ପୁସ୍ତକର ପ୍ରକାଶନ ବ୍ୟତୀତ କବି ସ୍ୱଜୀବନରେ ଅଧିକ କିଛି ପାଇ ନାହାନ୍ତି । ୧୯୭୪ ମସିହାରେ ସାହିତ୍ୟ ଏକାଡେମୀ ଦ୍ୱାରା "ସତ୍ୟଭାମା" କାବ୍ୟର ପ୍ରକାଶନ ଓ ଏହି କାବ୍ୟ ପାଇଁ କବିଙ୍କୁ ଏକାଡେମୀର ପ୍ରଦତ୍ତ ପୁରସ୍କାର ହିଁ ତାଙ୍କ କବି ଜୀବନର ସର୍ବଶ୍ରେଷ୍ଠ ସ୍ୱୀକୃତି । କବି ଶ୍ରୀ ପ୍ରଧାନ ଓଡ଼ିଶାର ବହୁ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ସମ୍ମାନିତ । ସେ ଚାକିରିରୁ ଅବସର ଗ୍ରହଣ କରି ପେନସନ୍ ସହିତ କଳାକାର ଭତ୍ତା ମଧ୍ୟ ଲାଭ କରିଛନ୍ତି ।

କବି ଶ୍ରୀ ପ୍ରଧାନ କୁଳବୃଦ୍ଧ ଭାବରେ ସ୍ୱଗ୍ରାମ ସଂଲଗ୍ନ ବରାଠ ଅଞ୍ଚଳରେ ବର୍ତ୍ତମାନ ସସ୍ନେହ ପୂଜିତ ଓ ଅଭିନନ୍ଦିତ । କୁଞ୍ଜବିହାରୀଙ୍କ ବ୍ୟତୀତ ତାଙ୍କର ଅନ୍ୟ ସମସ୍ତ ଭ୍ରାତୃଗଣ ଇହଲୀଳା ସାଙ୍ଗ କରି ସାରିଲେଣି । ସ୍ୱୀୟ ଗୃହରେ ଉପବେଶନ କରିଥିବା ସମୟରେ କୌଣସି ରସଗ୍ରାହୀ ପାଠକ

ବା ଶୁଣିଥିଲେ, ଯଦି ତାଙ୍କ ନିକଟରେ ପଢନ୍ତି ତଥାପି ବା ଅନ୍ୟ କୌଣସି ସାହିତ୍ୟ ଆଲୋଚନା କରେ, ତେବେ ସେଥିରେ ଅତ୍ୟନ୍ତ ଉତ୍ସୁକତାର ସହିତ ଅଂଶ ଗ୍ରହଣ କରନ୍ତି ଏବଂ ପ୍ରସଙ୍ଗକ୍ରମେ ଆତ୍ମବିଭୋର ହୋଇ ଉଠନ୍ତି । ଜରାଗ୍ରସ୍ତ ହେତୁ ଶରୀର ସହିତ ତାଙ୍କର ସଂବୋଧ କ୍ଷମତା ଅନେକାଂଶରେ ହରାଇଛନ୍ତି, ମାତ୍ର ଏବେବି ତାଙ୍କର ସ୍ମୃତିଶକ୍ତି ପ୍ରଚଣ୍ଡ । ନିଜର ତଥା ଭଞ୍ଜ ଆଦିଙ୍କ ଅନେକ କାବ୍ୟ କବିତା ତଥା ସଂସ୍କୃତ ସାହିତ୍ୟର ପଦୋଦ୍ଧାର ଏବେବି ସେ ପ୍ରାସଙ୍ଗିକତାନୁସାରେ କରିପାରନ୍ତି । ସମସ୍ତର ଅନେକ ଚିହ୍ନକୁ ନିଜ ଦେହ ଓ ମନରେ ବହନ କରି ଶତାବ୍ଦୀର ଏ ସୂର୍ଯ୍ୟ ଅସ୍ତାଚଳର ଦ୍ୱାରଦେଶରେ ଦଣ୍ଡାୟମାନ । ବିଗତ ଦିନର ସ୍ମୃତିଚାରଣ କରି ବେଳେ ବେଳେ ସେ ବେଶ୍ ନିରାସକ୍ତ ଭାବରେ କହନ୍ତି "ସମସ୍ତେ ଗଲେଣି, ଆଉ ବା କେତେଦିନ ।"

ସ୍ୱଭାବସୁଲଭ ଭାବୁକତାର ଚରମ ପରିପ୍ରକାଶରେ ଏ ବୃଦ୍ଧାବସ୍ଥା ତାଙ୍କର କେବଳ ବିଭୂମୟ । କବି ନିଜ କାବ୍ୟପୁରୁଷର ଭାଷାରେ ସୂଚିତ କରି ଗ୍ଲାଇଛନ୍ତି ।

> 'ହରିଣ୍ୟେଗର୍ଭେ ନମୋ' ମନ ପରିସର ଯେତେ
> ପୂର୍ଣ୍ଣ ହୋଇ ରହି ପ୍ରଭୋ ଯାଉଛି ନିରତେ ।"



### ଉଭୟ ଭାଷା ପ୍ରବୀଣ

# ଅଧ୍ୟାପକ ବେଣୀମାଧବ ପାଢ଼ୀ

**ଡଃ ସୂଚନା ପାଢ଼ୀ**

ଡଃ ବେଣୀମାଧବ ପାଢ଼ୀଙ୍କ ଜନ୍ମ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଚିକିଟି—ଲୋକନାଥପୁର ଶାସନରେ । ସେ ୧୯୧୯ ମସିହା ଜୁନ୍ ୭ ତାରିଖରେ ଭୂମିଷ୍ଠ ହୋଇଥିଲେ । ତାଙ୍କ ପିତାଙ୍କ ନାମ ନେତ୍ରାନନ୍ଦ ପାଢ଼ୀ ଓ ମାତାଙ୍କ ନାମ ଚନ୍ଦ୍ରକଳା । ପିତା ଥିଲେ ଜଣେ ନୈଷ୍ଠିକ ବ୍ରାହ୍ମଣ—କୁଳବୃତ୍ତି ଥିଲା ପୌରୋହିତ୍ୟ । ସେ ପୁରାଣ ପାଠ ତଥା ବ୍ରାହ୍ମଣ୍ୟ କର୍ମ କରିବାରେ ଧୂରନ୍ଧର ଥିଲେ । ତାଙ୍କ ପୁରାଣ ବୋଲିବା ଶୈଳୀ ଓ ଶ୍ରୁତିମଧୁର କଣ୍ଠସ୍ୱର ଯୋଗୁ ତତ୍କାଳ ଧର୍ମପ୍ରାଣ ଜନତା ତାଙ୍କୁ ନିମନ୍ତ୍ରଣ କରିନେଇ ବ୍ରତପାଳନ ପୂର୍ବକ ଅଷ୍ଟାଦଶ ପୁରାଣ ବିଶେଷ କରି ଓଡ଼ିଆ ମହାଭାରତ ଓ ରାମାୟଣ ଶ୍ରବଣ କରିବାକୁ ଆଗ୍ରହ ପ୍ରକାଶ କରୁଥିଲେ । ତା'ଛଡ଼ା କବିତା ଓ ଗୀତିନାଟ୍ୟ ରଚନା କରିବାରେ ମଧ୍ୟ ତାଙ୍କର ଅପୂର୍ବ ଦକ୍ଷତା ଥିଲା । ଏବେସୁଦ୍ଧା ତାଙ୍କ ଗୀତିନାଟ୍ୟଗୁଡ଼ିକ ଗଞ୍ଜାମ ଓ ଶ୍ରୀକାକୁଳମ ସୀମାନ୍ତ ଗ୍ରାମମାନଙ୍କରେ ପାଣ୍ଡୁଲିପି ଆକାରରେ ରହିଥିବା ଦେଖାଯାଏ ।

ସେ କାଳରେ ସେଗୁଡ଼ିକ ମଞ୍ଚସ୍ଥ ହୋଇ ଅତ୍ୟନ୍ତ ଲୋକପ୍ରିୟ ହୋଇ ପାରିଥିଲା । ସେ ମଧ୍ୟରୁ 'ଊଷା ପରିଣୟ' ଓ 'ଅଭିମନ୍ୟୁ ବଧ' ପ୍ରଭୃତି ପ୍ରଧାନ ।

ଶୁଣାଯାଏ, ଲୀଳା ବିଶେଷତଃ 'ରାମଲୀଳା' ଛାନ୍ଦ ଗାନ କରିବାରେ ତାଙ୍କର ସମକକ୍ଷ କେହି ନ ଥିଲେ । ସେ ସବୁରୁ ଯେଉଁ ଅର୍ଥ ଉପାର୍ଜିତ ହେଉଥିଲା ତଦ୍ୱାରା କୁଟୁମ୍ବ ପୋଷଣ କରିବାରେ ଅଭାବ ଅନୁଭୂତ ହେଉ

ନ ଥିଲା । ତଥାପି ଅବସ୍ଥା ସ୍ୱଚ୍ଛଳ ନ ଥିଲା । ସେ ପୌରୋହିତ୍ୟ, ଯେଉଁ କାର୍ଯ୍ୟରେ ଯଜମାନଙ୍କ ଅନ୍ତ୍ୟେଷ୍ଟି କ୍ରିୟା ମଧ୍ୟ ଅନ୍ତର୍ଭୁକ୍ତ ତାକୁ ଅପଛନ୍ଦ ମନେକରି ପୂର୍ବପୁରୁଷ ପରିତ୍ୟାଗ କଲେ ଓ ପାରଳାଖେମୁଣ୍ଡିକୁ ସପରିବାର ଉଠିଯିବାକୁ ମନସ୍ଥ କଲେ । କାରଣ ସେତେବେଳେ ପାରଳାଖେମୁଣ୍ଡି ଅଞ୍ଚଳ କଳାପୀଠ ରୂପେ ବିବେଚିତ ହେଉଥିଲା ।

୧୯୨୦ ମସିହା ଅପ୍ରେଲ ମାସ ବେଳକୁ ସେ ନିଜ ଗ୍ରାମ ଛାଡ଼ି ପାରଳାଖେମୁଣ୍ଡୀ ଉଠି ଆସିଲେ । ସେତେ ବେଳେ ସେଠାରେ ରାଜ୍ୟ ଶାସନ କରୁଥାନ୍ତି ପାରଳାର ସ୍ୱନାମଧନ୍ୟ ମହାରାଜା ସ୍ୱର୍ଗୀୟ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ । ତାଙ୍କର ଗୁଣ ଗ୍ରାହିତା ଯୋଗୁ ସେ ସାମୟିକ ଧର୍ମକର୍ମାଦି କାର୍ଯ୍ୟରେ ବ୍ରତାଦି ପାଳନ ନିମନ୍ତେ ବ୍ରାହ୍ମଣ ରୂପେ ବରଣ ହୋଇ ଦେବାର୍ଚ୍ଚନ ମାନଙ୍କରେ ଜପ-ହୋମାଦି କାର୍ଯ୍ୟ ସମାପନ କରୁଥିଲେ । ସେତେବେଳକୁ ପୁଅର ବୟସ ଥିଲା ମାତ୍ର ଦଶମାସ ।

ଏ ପ୍ରସଙ୍ଗରେ ଆଉ ଏକ କଥା ସ୍ମରଣ କରାଇବା ଉଚିତ ଯେ ପିତା ନିତ୍ୟାନନ୍ଦଙ୍କ ଔରସରୁ ଏଥିପୂର୍ବରୁ ତିନୋଟି ଦୁହିତା ଜନ୍ମିଥିଲେ ସୁଦ୍ଧା ପୁତ୍ର ଅଭାବରୁ ଦମ୍ପତି ଅତ୍ୟନ୍ତ ମର୍ମାହତ ହୋଇ ପଡ଼ିଥିଲେ । ମାତା ଚନ୍ଦ୍ରକଳା ପୁତ୍ରପ୍ରାପ୍ତି ଆଶାରେ ନାନାଦି କଠୋର ବ୍ରତ ଉପବାସ ପାଳନ କରୁଥିଲେ । ଯାହାହେଉ ଦିନେ ତାଙ୍କର ଗର୍ଭୋଦୟ ହୁଏ । ଏହା ଜାଣି ପିତା ନିତ୍ୟାନନ୍ଦ ସନ୍ତାନ ଜନ୍ମହେବା କିଛିଦିନ ଆଗରୁ ପ୍ରୟାଗ ସନ୍ନିକଟ ତ୍ରିବେଣୀ ଘାଟରେ ଥିବା ବେଣୀମାଧବଙ୍କ ମନ୍ଦିରରେ ଅଧିଆ ପଡ଼ି ଏକୋଇଶ ଦିନଯାଏଁ କାଷ୍ଠ ଉପବାସ ରହି ବିଧି ପାଳନ କଲେ । ଉପବାସ କାଳ ମଧ୍ୟରେ ଦୈବୀ କୃପାଯୋଗୁ ତାଙ୍କର ପୁତ୍ରଟିଏ ଜନ୍ମହେଲା । ପୁତ୍ର ଜନ୍ମ ବାର୍ତ୍ତା ଶୁଣିଲାପରେ ସେ ସେଠାରୁ ଫେରି ଆସି ଆରାଧ୍ୟ ଦେବତା ବେଣୀ-ମାଧବଙ୍କ ନାମରେ ପୁଅର ନାଁ ରଖିଲେ 'ବେଣୀମାଧବ' । ପୁତ୍ର ଜନ୍ମର କିଛିଦିନ ପରେ ସେ ସ୍ୱଗ୍ରାମ ଲୋକନାଥପୁର ଛାଡ଼ିବା ସକାସେ ଉଦ୍‌ବିଗ୍ନ ହୋଇ ଉଠିଲେ ।

କାରଣ, ସେତେବେଳକୁ ସେଠାରେ ଉଚ୍ଚଶିକ୍ଷା ଲାଭ କରିବାରେ କୌଣସି ସୁବିଧା ନ ଥିଲା । ତାଙ୍କ ଧାରଣା ହେଲା, ପଲ୍ଲୀ ଗ୍ରାମ ଛାଡ଼ି

ସହରକୁ ନ ଗଲେ ପୁଅର ଉପଯୁକ୍ତ ଶିକ୍ଷାଲାଭ ହୋଇପାରିବ ନାହିଁ । ସେଥିଯୋଗୁ ମନରେ କୌଣସି ଦ୍ୱିଧା ନ ରଖି ଜନ୍ମମାଟିର ମୋହ ଭୁଲାଇ ପାରଳାଖେମୁଣ୍ଡିକୁ ଉଠି ଆସିଲେ ଏବଂ ଜଣେତ୍ୟ କଟକାସ୍ଥ ବ୍ରାହ୍ମଣ ସାହିରେ ଏକ ଭଡ଼ାଘରେ ରହି କାଳାନ୍ତିପାତ କରିବାକୁ ଲାଗିଲେ । ପୁରାଣ ପାଠ, ନାଟ୍ୟ ପରିଚାଳନା ଏବଂ ରାଜକୀୟ କର୍ମକର୍ମଣି ଦ୍ୱାରା ଯେନତେନ କୁଟୁମ୍ବ ପୋଷଣ କରିବାରେ ଅସୁବିଧା ରହିଲା ନାହିଁ ।

ବେଣୀମାଧବଙ୍କୁ ଯେତେବେଳେ ଚାରିବର୍ଷ ସେତେବେଳେ ତାଙ୍କୁ ନିକଟସ୍ଥ ବେବର୍ତ୍ତା ସାହି ନିମ୍ନ ପ୍ରାଇମେରୀ ସ୍କୁଲରେ ଭର୍ତ୍ତିକରା ହେଲା । ସେଠାରେ କୃତିତ୍ୱର ସହ ତୃତୀୟ ଶ୍ରେଣୀ ପାଶ୍ କଲାପରେ ପିତା ସ୍ଥାନୀୟ ସଂସ୍କୃତ କଲେଜରେ ତାଙ୍କର ଆଡ଼ମିସନ୍ କରାଇଲେ । ସେ ସମୟରେ ନିମ୍ନପ୍ରାଇମେରି ପାଶ୍ କରିଥିବା ପିଲାଙ୍କୁ ସଂସ୍କୃତ କଲେଜରେ 'ଏଲମେଣ୍ଟାରୀ ତୃତୀୟ' ଶ୍ରେଣୀରେ ନାମ ଲେଖାଇବାକୁ ସୁଯୋଗ ମିଳୁଥିଲା । ଇଂରାଜୀ ଶିକ୍ଷାପ୍ରତି ପରାଙ୍ମୁଖ ନୈଷ୍ଠିକ ବ୍ରାହ୍ମଣ ନେହାନନ୍ଦ ଏକମାତ୍ର ପୁତ୍ରକୁ ଇଂରାଜୀ ଶିକ୍ଷା ଦେବାରେ ଆଦୌ ପକ୍ଷପାତୀ ନ ଥିଲେ ।

ତାଙ୍କ ଧାରଣା ଥିଲା ଇଂରେଜୀ ପାଠ ପଢ଼ିଲେ ପୁଅ କୁଆଡ଼େ ନାସ୍ତିକ ହୋଇପଡ଼ିବ । ଯାହାହେଉ ସପ୍ତମ ବର୍ଷରେ ବେଣୀମାଧବ ଏଲମେଣ୍ଟାରୀ ତୃତୀୟ ଶ୍ରେଣୀରେ ନାମ ଲେଖାଇ ସଂସ୍କୃତ ଶିକ୍ଷା ଆରମ୍ଭ କଲେ । ଏଠାରେ ଉଲ୍ଲେଖଯୋଗ୍ୟ, ସେକାଳରେ ସଂସ୍କୃତ କଲେଜରେ ପଢ଼ୁଥିବା ସମସ୍ତ ଛାତ୍ରଙ୍କୁ ମାସିକ ବୃତ୍ତି ପ୍ରଦାନ କରାଯାଉଥିଲା, ଯାହାର ପରିମାଣ ଥିଲା ସାତମାଣ ଦୁଇଅଡା ଅର୍ଥାତ୍ ବାଇଶି କଳେ ଚାଉଳ ସହିତ ଚାରିଟଙ୍କା । ଏଲମେଣ୍ଟାରୀ ତୃତୀୟ ଓ ଚତୁର୍ଥ ପାଶ୍ କଲାପରେ 'ଆଡ଼ଭାନ୍‌ସ' ୧ମ ଓ ୨ୟ ପଢ଼ିସାରି 'ଏଣ୍ଟ୍ରାନସ୍ ଶ୍ରେଣୀ'କୁ ଉନ୍ନୀତ ହେଲେ । ଏଣ୍ଟ୍ରାନସ୍ ପାଠ୍ୟକ୍ରମର ଦ୍ୱିତୀୟ ବର୍ଷ ଶେଷରେ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ବସିବାକୁ ପଡ଼େ । ସେତେବେଳକୁ ଗଞ୍ଜାମ ଜିଲ୍ଲା ମାଡ୍ରାସ ପ୍ରେସିଡେନ୍‌ସିର ଅନ୍ତର୍ଗତ ଥିଲା ।

ଏଣୁ ପାରଳା ସଂସ୍କୃତ କଲେଜର ପରୀକ୍ଷାମାନ ମାଡ୍ରାଜ୍ ବିଶ୍ୱ-ବିଦ୍ୟାଳୟ ନିୟମାନୁଯାୟୀ ପରିଚାଳିତ ହେଉଥିଲା । ଅବଶ୍ୟ ୧୯୩୦

ମସିହା ବେଳକୁ ତାହା ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ଅଧୀନରୁ ଆସି ଆନ୍ଧ୍ର ବିଶ୍ୱବିଦ୍ୟାଳୟ ସହିତ ସାମିଲ୍ ହେବାରୁ ତା'ର ନିୟମାନୁସରଣରେ ପରୀକ୍ଷାମାନ ସଂଘଟିତ ହେଲା ।

ନୂତନ ଭାବେ ଆନ୍ଧ୍ର ବିଶ୍ୱବିଦ୍ୟାଳୟର ଅଭ୍ୟୁଦୟ ଘଟିବାରୁ ସୁଦୂର ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ପରିବର୍ତ୍ତେ ନିକଟବର୍ତ୍ତୀ ଆନ୍ଧ୍ର ବିଶ୍ୱ-ବିଦ୍ୟାଳୟ ଅଧୀନରେ ରହିବା ପାରଳାବାସୀଙ୍କ ପକ୍ଷେ ସହଜ ଓ ସୁବିଧାଜନକ ଥିଲା । ସେ ସମୟରେ 'ଏଣ୍ଟ୍ରାନସ' ଦ୍ୱିତୀୟ ବର୍ଷର ପରୀକ୍ଷା ପାଶ୍‌କରି 'ପ୍ରିଲିମିନାରୀ' ଦୁଇବର୍ଷ ଓ 'ଫାଇନାଲ୍' ଦୁଇବର୍ଷ ପଢ଼ି ଉତ୍ତୀର୍ଣ୍ଣ ହେଲାପରେ ସଂସ୍କୃତ ଟାଇଟଲ୍ ବା ଉପାଧି ପ୍ରଦାନ କରାଯାଉଥିଲା । ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ପ୍ରଦତ୍ତ ସଂସ୍କୃତ ଉପାଧିର ନାମ ଥିଲା 'ବିଦ୍ୱାନ୍' ଓ 'ଶିରୋମଣି' ।

ଯେଉଁମାନେ ଏଣ୍ଟ୍ରାନ୍ସ ପାଶ୍ ପରେ ସଂସ୍କୃତ ସହିତ ଓଡ଼ିଆ ପାଠ୍ୟ ଅଧ୍ୟୟନ କରି ଫାଇନାଲ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଉଥିଲେ ସେମାନଙ୍କୁ 'ବିଦ୍ୱାନ' ଏବଂ କେବଳ ସଂସ୍କୃତ ଭାଷାର ସାହିତ୍ୟ ହେଉ ବା ନ୍ୟାୟ ମୀମାଂସା, ବ୍ୟାକରଣ, ଧର୍ମଶାସ୍ତ୍ରାଦି ଯେ କୌଣସି ବିଷୟରେ ହେଉ ଅଧ୍ୟୟନ କରି ସଫଳତା ଅର୍ଜ୍ଜନ କରୁଥିବା ଛାତ୍ରଙ୍କୁ 'ଶିରୋମଣି' ଉପାଧି ପ୍ରଦାନ କରାଯାଉଥିଲା । ଯଥା—ସାହିତ୍ୟ ଶିରୋମଣି, ମୀମାଂସା ଶିରୋମଣି, ବେଦାନ୍ତ ଶିରୋମଣି ଇତ୍ୟାଦି । ଉପାଧିପ୍ରାପ୍ତ ଛାତ୍ର ମଧ୍ୟରୁ 'ବିଦ୍ୱାନମାନେ ଓଡ଼ିଆ ଅଧ୍ୟାପକ ଏବଂ 'ଶିରୋମଣି' ମାନେ ସଂସ୍କୃତ ଅଧ୍ୟାପକ ହେବା ପାଇଁ ଯୋଗ୍ୟ ବିବେଚିତ ହେଉଥିଲେ ।

ଆନ୍ଧ୍ର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲାପରେ ବିଦ୍ୱାନ ଉପାଧିଟି 'ଉଭୟ ଭାଷା ପ୍ରବୀଣ' ଏବଂ 'ଶିରୋମଣି'ଟି 'ବିଦ୍ୟାପ୍ରବୀଣ' ଭାବେ ପରିବର୍ତ୍ତିତ ହୋଇପଡ଼ିଲା । ଉଦ୍ଦେଶ୍ୟ ଆନ୍ଧ୍ର ଓ ମାନ୍ଦ୍ରାଜ୍ ଦୁଇ ବିଶ୍ୱବିଦ୍ୟାଳୟର ସ୍ୱାତନ୍ତ୍ର୍ୟ ଦର୍ଶାଇବା ।

ସେ ଯାହାହେଉ ବେଣୀମାଧବ ଏଣ୍ଟ୍ରାନ୍ସ ପରେ ସଂସ୍କୃତ ସହିତ ଓଡ଼ିଆ ସାହିତ୍ୟ ଚାରିବର୍ଷ ଅଧ୍ୟୟନ କରି ଫାଇନାଲ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ପକ୍ଷରୁ 'ଉଭୟ ଭାଷା

ପ୍ରବୀଣ' ଉପାଧି ଲାଭ କଲେ । ଏଠାରେ ଏକ ଅପ୍ରତ୍ୟାଶିତ ଘଟଣାର ଉଲ୍ଲେଖ କରିବା ବୋଧହୁଏ ଅପ୍ରାସଙ୍ଗିକ ହେବନାହିଁ—୧୯୩୨ ମସିହା, ସେତେବେଳକୁ ତାଙ୍କୁ ବାର ପୂରି ତେରବର୍ଷ । ବାଲ୍ୟଚପଳତାର ଠିକ୍ ମଝାମଝି । ଏଣ୍ଟ୍ରାନ୍ସ ଦ୍ୱିତୀୟ ବର୍ଷ ।

ସେ କାଳରେ ବୋର୍ଡ଼ ହେଉ ବା ବିଶ୍ୱବିଦ୍ୟାଳୟ ହେଉ ପ୍ରାୟ ସମସ୍ତ ପରୀକ୍ଷା ମାର୍ଚ୍ଚ-ଏପ୍ରିଲ ମଧ୍ୟରେ ସରି ଯାଉଥାଏ । ଏଣୁ ଜାନୁୟାରୀ ଶେଷ ବା ଫେବୃୟାରୀ ଆରମ୍ଭରେ ପରୀକ୍ଷା ଫିସ୍‌ମାନ ଦାଖଲ ହୋଇଯାଏ । ସଂସ୍କୃତ ପରୀକ୍ଷାଗୁଡ଼ିକର ବି ସେ ନିୟମରେ ଏଣ୍ଟ୍ରାନ୍ସ ପରୀକ୍ଷା ଫିସ୍ ସେବର୍ଷ ଜାନୁୟାରୀ ଶେଷ ସପ୍ତାହରେ ଦେବାକୁ ଥାଏ । ଫର୍ମ ପୂରଣ କରିସାରି ସାଙ୍ଗ ସାଥିଙ୍କ ସହିତ ଘରବାହୁଡ଼ା ବେଳକୁ ବେଣୀମାଧବ ରାସ୍ତା କଡ଼ରେ ଥିବା ଗୋଟିଏ 'କରୁଣା' (ଖଟା କମଳା) ଗଛ ଉପରୁ କରୁଣା ତୋଳିବାକୁ ଯାଇ ଡାଳ ଉପରୁ ଅକସ୍ମାତ ଖସିପଡ଼ି ପ୍ରଚଣ୍ଡ ଭାବେ ଆଘାତ-ପ୍ରାପ୍ତ ହୁଅନ୍ତି । ଡାହାଣ ହାତଟି ଦୁଇଖଣ୍ଡ ହୋଇ ଭାଙ୍ଗିଯାଏ । ସେ କାଳରେ ଏବପରି ଚିକିତ୍ସା ବିଜ୍ଞାନ ଉନ୍ନତି ଲାଭକରି ନଥାଏ ।

ଦେଶୀ ଦେଶୀ ଉପାୟରେ ହିଁ ତାଙ୍କର ଚିକିତ୍ସା କରିବାକୁ ପଡ଼ିଲା । ଜଣାଗଲା ଛ'ମାସ ଆଗରୁ ହାତଟି କର୍ମକ୍ଷମ ହେବାର ସମ୍ଭାବନା ନାହିଁ । କିନ୍ତୁ ପରୀକ୍ଷା ଥାଏ ମୋଟେ ଦେଢ଼ମାସ । କ'ଣ କରାଯାଏ, ଭାବି ଭାବି ଶେଷରେ ସେ ସ୍ଥିର କଲେ ବାଁ ହାତରେ ଲେଖି ପରୀକ୍ଷା ଦେବେ । ବାଁ ହାତରେ ଅକ୍ଷର ଲେଖିବା ଆରମ୍ଭ କଲେ । ପ୍ରତିଦିନ ଘଣ୍ଟାଘଣ୍ଟା ଲେଖାଏଁ ନିୟମିତ ଅଭ୍ୟାସ କରି ଶେଷରେ ସଫଳକାମ ହେଲେ ଏବଂ ବାଁ ହାତରେ ପରୀକ୍ଷାରେ ଉତ୍ତର ଲେଖି ଉତ୍ତୀର୍ଣ୍ଣ ହେଲେ । ଯା'ହେଉ ଦୀର୍ଘଦିନ ହେଉପଛେ ଭଗବତ୍ କୃପାରୁ ସେ ଆରୋଗ୍ୟ ଲାଭକଲେ । ହାତଟି ପୂର୍ବବତ୍ କର୍ମକ୍ଷମ ହେଲା । ଏ ବିଷୟରେ ସେ କହନ୍ତି—ଅଭ୍ୟାସ ବଳରେ ସବୁକିଛି କରି-ଯାଇପାରେ । କିନ୍ତୁ ସବୁଦିନ ପାଇଁ ହାତଟି ଭାଙ୍ଗିପଡ଼ି କାମକୁ ସ୍ପର୍ଶକରି ନପାରି ରହିଗଲା ।

'ଉଭୟ ଭାଷା ପ୍ରବୀଣ' ଉପାଧି ପାଇବା ବେଳକୁ ତାଙ୍କ ବୟସ ମାତ୍ର ସତର ବର୍ଷ । ଚାକିରୀ କରିବା ପାଇଁ ଅଠର ବର୍ଷ ସୀମା ନିର୍ଦ୍ଧାରିତ

ଥିବା ଯୋଗୁ ପାର୍ଦ୍ଧ ଏକବର୍ଷ ଅକର୍ମା ଭାବେ ବସି ରହିବା ଅପେକ୍ଷା ଘରେଇ ଭାବେ 'ସାହିତ୍ୟ ବିଦ୍ୟାପ୍ରବୀଣ' ଉପାଧି ପରୀକ୍ଷା ଦେବାକୁ ଉଚିତ୍ ମନେ କଲେ । ଏ କାର୍ଯ୍ୟରେ ତାଙ୍କ ଶିକ୍ଷାଗୁରୁ ସ୍ୱର୍ଗୀୟ ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମାଙ୍କ ସହିତ ସେ ପରାମର୍ଶ କରନ୍ତି । ସେ ବି ଆନନ୍ଦର ସହିତ ତାଙ୍କୁ ଉତ୍ସାହିତ କରନ୍ତି ।

ନିୟମ ଥାଏ, ଯେଉଁମାନେ ସଂସ୍କୃତରେ ଗୋଟିଏ ଉପାଧି ଲାଭକରି ଅନ୍ୟ ଉପାଧି ପାଇଁ ଘରେଇ ଭାବେ ପରୀକ୍ଷା ଦେବାକୁ ଆବେଦନ କରିବେ ସେମାନେ ପ୍ରିଲିମିନାରୀ ଓ ଫାଇନାଲ୍ ଚାରିବର୍ଷର ପାଠ୍ୟକ୍ରମକୁ ଦୁଇ ବର୍ଷରେ ସାରି ପରୀକ୍ଷାରେ ବସିପାରିବେ । ସେ ଅନୁସାରେ ଚାରି ବର୍ଷର ବିଦ୍ୟାପ୍ରବୀଣ ପାଠ୍ୟକୁ ଦୁଇ ବର୍ଷରେ ଶେଷକରି ୧୯୩୮ ମସିହାରେ 'ସାହିତ୍ୟ ବିଦ୍ୟା ପ୍ରବୀଣ' ଉପାଧି ଲାଭ କଲେ । ସେତେବେଳେ ତାଙ୍କ ବୟସ ଥିଲା ୧୯ ବର୍ଷ । ଚାକିରି କରିବାର ପ୍ରବଳ ଇଚ୍ଛା, କିନ୍ତୁ ଦେଉଛି କିଏ । ପରାଧୀନ ଭାରତବର୍ଷରେ ସଂସ୍କୃତର ସ୍ଥାନ ବା କେଉଁଠି ? ଏକଥା ଜାଣି ଗୁଣବତ୍ସଳ ପଣ୍ଡିତ କବିରାଜ ଅନନ୍ତ ତ୍ରିପାଠୀ ଶର୍ମା ମହୋଦୟ ନିଜେ ପ୍ରତିଷ୍ଠା କରିଥିବା 'ଆୟୁର୍ବେଦୀୟ ସଂସ୍କୃତ ସ୍କୁଲ୍'ରେ ତାଙ୍କୁ ସଂସ୍କୃତ ଅଧ୍ୟାପନା କରିବା ପାଇଁ ପ୍ରଥମେ ନିଯୁକ୍ତି ପ୍ରଦାନ କଲେ । ସେଠାରେ ସେ ମାତ୍ର ଦେଡ଼ବର୍ଷ ଅଧ୍ୟାପନା କରିନଥିନ୍ତି କି ନାହିଁ ସେ ମଧ୍ୟରେ ସ୍ୱର୍ଗୀୟ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଜ୍ୟେଷ୍ଠପୁତ୍ର ଯୁବରାଜ ରାମଚନ୍ଦ୍ର ଦେବଙ୍କ ଶୁଭପରିଣୟ ସମ୍ପାଦିତ ହୁଏ ।

ବୋଧହୁଏ ସେ ଥିଲା ୧୯୪୦ର ଘଟଣା । ବିଭିନ୍ନ ସ୍ଥାନରୁ ବିଭିନ୍ନ ଦେଶରୁ ଗୁଣୀ, ପଣ୍ଡିତ, ସଙ୍ଗୀତଜ୍ଞଙ୍କ ସମାବେଶ ଘଟି ଯାଇଥାଏ । ଉଦାରମନା ଦେଶପ୍ରେମୀ ପାରଳା ଗଜପତି ମହାରାଜାଙ୍କ ଉତ୍ସବ, ନାନା ଦିଗରୁ ନାନା ଲୋକଙ୍କ ସମାଗମ । ଅମୀରଙ୍କଠାରୁ ଗରିବ ଯାଏଁ । ବିବାହ ଉତ୍ସବ ଶେଷହୁଏ । ରାଜା ଆଗନ୍ତୁକଙ୍କୁ ଯଥାଯୋଗ ସତ୍କାର ପୂର୍ବକ ବିଦାୟ ଦେଲେ । ଅବଶିଷ୍ଟ ରହିଲେ କବି ଓ ପଣ୍ଡିତ-ମଣ୍ଡଳୀ । କେଉଁ ମାନଦଣ୍ଡ ଧରି ତାଙ୍କୁ ବିଦାୟ ଦିଆଯିବ ରାଜାଙ୍କ ଭାବେଣି ପଡ଼େ । ହଠାତ୍ ତାଙ୍କ ମନକୁ କ'ଣ ଛୁଇଁଲା କେଜାଣି, ଅପରାହ୍ନ ୫ଟା ବେଳେ ଦେବାନ୍‌ଙ୍କୁ ଡକାଇ ଆଦେଶ ଦେଲେ—ପଣ୍ଡିତମାନଙ୍କୁ କଣାଇ

ଦିଅ, ଆସନ୍ତା କାଲି ସନ୍ଧ୍ୟା ପାଞ୍ଚଟା ସୁଦ୍ଧା (ଅର୍ଥାତ୍ ଚବିଶ ଘଣ୍ଟା ମଧ୍ୟରେ) ଆମ ଉଆସ ପଛପଟେ ଥିବା 'ସୀତା ସାଗର' ପୋଖରୀ ବିଷୟରେ ଗୋଟିଏ ଗୋଟିଏ କବିତା ଲେଖିବେ । ଶୀର୍ଷକ 'ସୀତା ସାଗରେ ପ୍ରଦୋଷ ।'

ତତ୍କ୍ଷଣାତ୍ ଆଦେଶ କାର୍ଯ୍ୟକାରୀ ହୁଏ । ପଣ୍ଡିତମାନଙ୍କୁ ରାଜାଜ୍ଞା ଜଣାଇ ଦିଆଗଲା । ଏହି ବାର୍ତ୍ତା ବେଣୀମାଧବଙ୍କ ଜଣେ ସାଙ୍ଗପିଲା ଶୁଣି ଆସି ତାଙ୍କୁ କଥା ପ୍ରସଙ୍ଗରେ ଜଣାଇ ଦେଇଗଲା । କାରଣ, ସେତେବେଳକୁ ସେ ସାଥିମେଳରେ ସାମୟିକ ଗୀତ କବିତାଦି ରଚନା କରି ତାଙ୍କୁ ଶୁଣାଉ ଥିଲେ ଓ ସେମାନେ ତା'ର ଉଚ୍ଚ ପ୍ରଶଂସା କରୁଥିଲେ । ସେମାନଙ୍କ ଧାରଣା ଥାଏ ସେ ଜଣେ ଭଲ କବି । ସା'ହେଉ ବାର୍ତ୍ତା ପାଇବା ମାତ୍ରେ ସେ କବିତା ଲେଖିବାକୁ ବସିଲେ ଓ ରାତାରାତି ଶେଷକରି ପରଦିନ ଦି'ପହରେ ନଅରି ଅଫିସରେ ଦାଖଲ କରି ଆସିଲେ । ସୂକ୍ଷ୍ମଧୀ ସଂପନ୍ନ ଗଜପତି ମହାରାଜା ସେଦିନ ରାତିରେ ଲେଖାଗୁଡ଼ିକୁ ତତ୍କାଳ ରାଧାକାନ୍ତ ମଠ ମହନ୍ତ, ଯେ କି ରାଜାଙ୍କ ଦୀକ୍ଷାଗୁରୁ, ସ୍ୱର୍ଗୀୟ ଶ୍ରୀ ରାଧାକୃଷ୍ଣ ଦାସ, ଜୟପୁର ମହାରାଜା ସାହିତ୍ୟରସିକ ଶ୍ରୀ ଶ୍ରୀ ବିକ୍ରମ ଦେବବର୍ମା ଏବଂ ପୁରୀ ବିମାପଡ଼ାବାସୀ ପାରଳା ସଂସ୍କୃତ କଲେଜର ତତ୍କାଳୀନ ଅଧ୍ୟକ୍ଷ ସ୍ୱର୍ଗୀୟ ମଧୁସୂଦନ ମହାପାତ୍ରଙ୍କ ଦ୍ୱାରା ପରୀକ୍ଷିତ କରାଇ ପ୍ରଥମ ତିନିଜଣଙ୍କୁ ଯଥାକ୍ରମେ ଶହେ ଷୋହଳ ଟଙ୍କା ସହିତ ପାଟଯୋଡ଼, ଅଠାବନ ଟଙ୍କା ସହିତ ପାଟଯୋଡ଼ ଏବଂ ଅଠାବନ ଟଙ୍କା ସହିତ ଲୁଗାଯୋଡ଼ ପୁରସ୍କାର ରୂପେ ଦିଆଗଲା । ଅନ୍ୟ ସମସ୍ତଙ୍କୁ ପଚିଶ ଟଙ୍କା ଲେଖାଏଁ ବିଦାକି ଦିଆଗଲା ।

ଯୋଗକୁ ପ୍ରଥମ ପୁରସ୍କାରଟି ଜୁଟେ ବେଣୀମାଧବଙ୍କ ଭାଗ୍ୟରେ । ବିବାହ ଗହଳି ଶେଷ ହେବାର କିଛି ଦିନ ବାଦେ ଦିନେ ମହାରାଜା ଦେବାନଙ୍କୁ ଡାକି ପଚାରନ୍ତି—କବିତା ସମ୍ବନ୍ଧୀ ପୁରସ୍କାରମାନ ପାଇଲେ କିଏ ? ପ୍ରଥମ ପୁରସ୍କାର କିଏ ନେଲା ? ଦେବାନ୍ ଉତ୍ତର ଦେଲେ—ପ୍ରଥମ ପୁରସ୍କାର ନେଲେ ପାରଳାର ଜଣେ ପଣ୍ଡିତ, ନାଁ, ବେଣୀମାଧବ ପାଢ଼ୀ । "କିଏ ସେ ବୁଝି ତ"—ରାଜା କହିଲେ । ତା' ପରଦିନ ତାଙ୍କୁ ଡକରା ଆସିଲା ଦେବାନ୍‌ଙ୍କ ଅଫିସ୍‌ରୁ । ସେ ପ୍ରଥମେ ବିଶ୍ୱାସ କରିପାରିଲେ ନାହିଁ । ତଥାପି ନିର୍ଦ୍ଦିଷ୍ଟ ସମୟରେ ଯାଇ ଦେବାନଙ୍କ ଅଫିସ୍‌ରେ ପହଞ୍ଚିଲେ ।

ଦେବାନ୍ ତାଙ୍କୁ ଦେଖି ଟିକିଏ ବିସ୍ମିତ ହେବାପରି ଜଣାଗଲା । ସେ ବୋଧହୁଏ ଭାବିଥିଲେ ପୁରସ୍କାର ଗ୍ରହଣ ବ୍ୟକ୍ତି ଜଣେ କେଉଁ ପ୍ରାପ୍ତ ବୟସ୍କ ଲୋକ ହୋଇଥିବେ । ଯା'ହେଉ କିଛି ସମୟ ପରେ ପଚାରିଲେ—ତୁମେ ବେଣୀମାଧବ ପାତ୍ରୀ ? 'ହଁ, ଆଜ୍ଞା ।' 'ତୁମ ଘର କୋଉଠି' ? 'କଟକ ଆ ସାହିରେ', 'ତୁମ ବାପା କ'ଣ କରନ୍ତି' ? 'କର୍ମକର୍ତ୍ତାଣି' । 'ତୁମେ କ'ଣ କରୁଛ' ? 'ମୁଁ, ଆଜ୍ଞା, ଦିବାନ ଆଉ ଶିରୋମଣି ପାଶ୍ କରି ଘରେ ବସିଛି' । 'କେଉଁଠୁ ପାଶ କରିଛ ? ଆମ ସଂସ୍କୃତ କଲେଜରୁ ? 'ହଁ, ଆଜ୍ଞା' । 'ଆଚ୍ଛା ଯାଅ' । ଏତିକିରେ ସେ ଘରକୁ ଫେରି ଆସିଲେ । ଦୁଇମାସ ପରେ ଦେବାନଙ୍କ ଦସ୍ତଖତ ଥାଇ କାଗଜଟିଏ ଆସିଲା—ସେ ପାରଳାଖେମୁଣ୍ଡି ସଂସ୍କୃତ କଲେଜରେ ସାହିତ୍ୟର କନିଷ୍ଠ ଅଧ୍ୟାପକଭାବେ ନିଯୁକ୍ତି ପାଇଲେ । ମାସିକ ଦରମା ପଚିଶ ଟଙ୍କା । ଏହା ଥିଲା ତାଙ୍କ ଜୀବନର ପ୍ରଥମ ନିଯୁକ୍ତି-ଭିତ୍ତି ଜୀବନର ଆଲୋକବର୍ତ୍ତିକା ।

ଏତିକିବେଳେ ଦ୍ୱିତୀୟ ପୃଥିବୀ ମହାସମର ଆରମ୍ଭ ହୁଏ । ଦରଦାମ୍ ହୁ ହୁ ବଢ଼ିଗଲେ । ଆଜିର ଦର କାଲିକି ନାହିଁ । ଟଙ୍କାରେ ତିନିସେର ଚାଉଳ । ଦରମା ପଇସା କୋଉଥିକି ନ ପାଏ । ପରିବାରର ଯାବତୀୟ ବୋଝ ତାଙ୍କ ଉପରେ । ପରିବାର ବୋଇଲେ ବୃଦ୍ଧ ପିତାମାତାଙ୍କ ସହିତ ଦୁଇଜଣ ବିଧବା ଭଉଣୀ ଓ ଭଣଜା ଭାଣିଜୀ ମିଶି ଆଠଜଣ । ସେଥିରେ ପୁଣି ମାତାଙ୍କ ଅନୁରୋଧ—ବାବୁରେ ଜଲ୍ଦି ବାହାହୁଅ; ଘରକୁ ବୋହୂ ଆସୁ । ମୁଁ ଆଉ ପାରିବିନି । ଏଣେ ବୃଦ୍ଧ ପିତା ରୋଗାକ୍ରାନ୍ତ—ଅକର୍ମଣ୍ୟ । ତାଦୃଶ ପରିସ୍ଥିତିରେ ସେ ବାଧହୋଇ ଶିକଟି ଜମିଦାର ଉତ୍ତର ବ୍ରାହ୍ମଣ ନୂଆଗାଁ ଗ୍ରାମବାସୀ ସ୍ୱର୍ଗୀୟ ଗୋପବଲ୍ଲଭ ପାତ୍ରୀଙ୍କ ତୃତୀୟା କନ୍ୟା ସୌଭାଗ୍ୟବତୀ କୁମାରୀ ଶାରଦାଙ୍କ ସହିତ ବିବାହ ସୂତ୍ରରେ ଆବଦ୍ଧ ହୁଅନ୍ତି । ଯାହାକି ସେ କାଳ ଅନୁସାରେ ଥିଲା ବାଲ୍ୟ ବିବାହ । ବିବାହର ଦ୍ୱିତୀୟ ବର୍ଷ ନିଷେକ କର୍ମ ସମାପନ ହୁଏ । ଶାରଦା ଘରକୁ ବୋହୂ ହୋଇ ଆସନ୍ତି । ବୋଝ ଉପରେ ନଳିତା ବିଡ଼ା ।

ବେଣୀମାଧବ ଦେଖିଲେ ଯୁଦ୍ଧୋତ୍ତରକାଳୀନ ଆର୍ଥିକ ସଙ୍କଟକୁ ସୀମିତ ଆୟ ମଧ୍ୟରେ ଅତିକ୍ରମ କରିବା ସମ୍ଭବ ନୁହେଁ । ସେଥିପାଇଁ ଅନ୍ୟ

ଉପାୟ ଖୋଜିବାକୁ ପଡ଼ିବ । 'ଅନ୍ୟ ଉପାୟ' କହିଲେ ଆଜି କିଛି ନୁହେଁ । ଆହୁରି ଅଧିକ ପଢ଼ିବା, ଅଧିକ ଦରମାର ଚାକିରି କରିବା ।

ଇଂରାଜୀ ଶିକ୍ଷା ନ କଲେ ବଡ଼ ଚାକିରିଟିଏ ପାଇବା ସେ ଯୁଗରେ ସମ୍ଭବ ନ ଥିଲା । ଏଣୁ ସେ ଏ.ବି.ସି.ଡି. ପଢ଼ିବା ଆରମ୍ଭ କରନ୍ତି । ସେଥିରେ ସହାୟକ ହେଲେ ତାଙ୍କର ସାଙ୍ଗସାଥି ଇଂରେଜ ପଢ଼ୁଆ ଅନ୍ତରଙ୍ଗ ବନ୍ଧୁଗଣ । ସେମାନଙ୍କଠାରୁ ଇତିହାସ, ଭୂଗୋଳ, ଇଂରାଜୀ, ଗଣିତ ଇତ୍ୟାଦି ଶିକ୍ଷା କରିବାରେ ଲାଗିପଡ଼ନ୍ତି । ସକାଳେ ଗୃହକାର୍ଯ୍ୟ, ଦିନରେ ଅଧ୍ୟାପନା, ରାତିରେ ଲଣ୍ଠନ ତଳେ ଇଂରାଜୀ ଅଧ୍ୟୟନ ।

ତା'ଛଡ଼ା ସାଙ୍ଗସାଥିଙ୍କୁ ଧରି 'କଳିଙ୍ଗ କଳା କୁଶୀଲବ' ନାମରେ ଏକ ନାଟ୍ୟସଂଘ ପ୍ରତିଷ୍ଠା କରି ସେମାନଙ୍କ ଅନୁରୋଧରେ ପ୍ରତିବର୍ଷ ନୂତନ ଭାବେ ଗୋଟିଏ ଗୋଟିଏ ଓଡ଼ିଆ ନାଟକ ରଚନା କରି, ସମୟେ ସମୟେ ବଙ୍ଗଳାରୁ ଅନୁବାଦ କରି ମଧ୍ୟ ସେଗୁଡ଼ିକୁ ମଞ୍ଚସ୍ଥ କରାନ୍ତି । କାରଣ ତାହା ଥିଲା ତାଙ୍କର ଅବସର ବିନୋଦନ । ସେହି ସମୟରେ 'ଅବଶ୍ୟାସୀ' ନାମରେ ଏକ ନାଟକ ରଚନା କରି ଦ୍ରୋଣ ଦର୍ଶକ ମହଲରେ ଚହଳ ପକାଇ ପାରିଥିଲେ । ତା'ଛଡ଼ା, ଆହୁରି ଚାରି ପାଞ୍ଚଖଣ୍ଡ ସାମାଜିକ ନାଟକ ମଧ୍ୟ ଲେଖିଥିଲେ ଯାହା ଏବେ ପାଣ୍ଡୁଲିପି ଆକାରରେ ଗଚ୍ଛିତ ରହିଛି । ସେତିକି ନୁହେଁ, ସରସ କବି ବନ୍ଧୁଙ୍କ ଉପରେ ଆଧାରିତ 'ଗ୍ରେଟକବି' ନାମକ ଏକ ଖଣ୍ଡକାବ୍ୟ ମଧ୍ୟ ରଚନା କରିଥିଲେ ଯାହା ପ୍ରଥମେ ପାରଳା-ଖେମୁଣ୍ଡି 'କଂଶାର ପ୍ରେସ୍'ରେ ମୁଦ୍ରିତ ହୋଇଥିଲା ଓ ପରବର୍ତ୍ତୀ କାଳରେ 'କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍' ଦ୍ୱାରା ପ୍ରକାଶିତ ହୋଇ ରହିଛି ।

ଏପରି କର୍ମଜଞ୍ଜାଳ ଭିତରେ ଦିନକୁ ଦିନ ଦାୟିତ୍ୱ ବଢ଼ି ଚାଲିଥାଏ । ପିତାଙ୍କ ରୋଗ ପ୍ରଶମିତ ହେବା ପରିବର୍ତ୍ତେ କ୍ରମଶଃ ବୃଦ୍ଧି ପାଇବାରେ ଲାଗିଥାଏ । ହଠାତ୍ ଦିନେ ରାତିରେ ସେ ମହାପ୍ରୟାଣ ଲାଭ କରନ୍ତି । ପୁଅ ପିତୃହୀନ ହୋଇ ପଡ଼ନ୍ତି । ତଥାପି ସେତିକିରେ ସେ ଭାଙ୍ଗି ନଯାଇ ଆହୁରି ଦ୍ୱିଗୁଣ ସାହସରେ କର୍ତ୍ତବ୍ୟ ସମାପନ କରିବାରେ ଲାଗିପଡ଼ନ୍ତି । ଏ ଅବସ୍ଥାରେ ଆପ୍ରାଣ ଚେଷ୍ଟାକରି ୧୯୪୫ ମସିହାରେ ଆନ୍ଧ୍ର ବିଶ୍ୱବିଦ୍ୟା-ଳୟ ପକ୍ଷରୁ ଅନୁଷ୍ଠିତ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ କୃତିତ୍ୱ ଭାବେ

ଅବଶିଷ୍ଟ ହୁଅନ୍ତି ଓ ଦ୍ୱିତୀୟ ଶ୍ରେଣୀରେ ପାଶ୍ କରନ୍ତି । ସେ ମଧ୍ୟରେ ମହାରାଜାଙ୍କ ଦ୍ୱାରା ପାରଳାଖେମୁଣ୍ଡିରେ ନୂତନ ଭାବେ ବାଳକ। ହାଇ-ସ୍କୁଲଟିଏ ପ୍ରତିଷ୍ଠିତ ହୁଏ ଏବଂ ତାଙ୍କୁ ସେଠାକୁ ହେଡ ପଣ୍ଡିତ ଭାବେ ବଦଳି କରାହୁଏ ।

ସେଠାରେ ରହି ଅର୍ଥାତ୍ ୧୯୪୬ ମସିହାରେ ସେ ଆନ୍ଧ୍ର ବିଶ୍ୱ-ବିଦ୍ୟାଳୟ ଦ୍ୱାରା ପରିଚାଳିତ P. O. L (Proficiency in Oriental Learning) ପରୀକ୍ଷା ଦେଇ ଡିପ୍ଲୋମା ହାସଲ କରନ୍ତି । ସେ ସମୟରେ କୌଣସି ସଂସ୍କୃତ ଉପାଧି ସହିତ P. O. L. ଡିପ୍ଲୋମା ସଂସ୍କୃତ ଏମ୍. ଏ. ଡିଗ୍ରୀ ସହିତ ସମାନ ବିବେଚିତ ହେଉଥାଏ । ଏତିକି-ବେଳେ ମହାରାଜା ସଂସ୍କୃତ କଲେଜରେ ଅଧ୍ୟକ୍ଷ ପଦବୀ ଖାଲିପଡେ, ଯାହାପାଇଁ ଏମ୍. ଏ. ଡିଗ୍ରୀର ଆବଶ୍ୟକତା ଥାଏ । ଯାହାହେଉ ସେ ସେଥିପାଇଁ ଦରଖାସ୍ତ କରନ୍ତି ଓ ଅସ୍ଥାୟୀ ଭାବେ ନିଯୁକ୍ତି ପାଆନ୍ତି । ସେତେବେଳେ ତାଙ୍କ ବୟସ ଥିଲା ମାତ୍ର ସତେଇଶ ବର୍ଷ । ନିଜେ ଶିକ୍ଷାଲାଭ କରିଥିବା ଅନୁଷ୍ଠାନରେ ଅଧ୍ୟକ୍ଷ ରୂପେ ନିଯୁକ୍ତି ପାଇ ଆପଣାକୁ ସେ ଗୌରବାନ୍ୱିତ ମନେ କରିଥିଲେ । ଏହି ପଦବୀରେ ସେତେବେଳେ ପ୍ରାଚୀନ ଭାରତ ଇତିହାସ ସହିତ ଇଂଲଣ୍ଡ ଇତିହାସ ଏବଂ ସଂସ୍କୃତ ସାହିତ୍ୟ ବିଷୟ ନେଇ ଆନ୍ଧ୍ର ବିଶ୍ୱବିଦ୍ୟାଳୟର ଆଇ. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୁଅନ୍ତି ।

ଏ ସମୟରେ ପୁଣି ଅଘଟନ ଏକ ଘଟଣା ମାଡ଼ିଆସେ । ଯାହା ତାଙ୍କୁ ମହାସଙ୍କଟରେ ପକାଇ ଦିଏ । ଏହା ୧୯୪୮ ର କଥା । ସେ ବର୍ଷ ଜମିଦାରୀ ଉଚ୍ଛେଦ ଆଇନ ଯୋଗୁ ପାରଳା ଜମିଦାରୀ ସରକାରଙ୍କ ହାତକୁ ଚାଲିଯାଏ । ରାଜପରିବାରକୃତ ସମସ୍ତ ଅନୁଷ୍ଠାନର ଦାୟିତ୍ୱ ସରକାର ବହନ କରନ୍ତି, କେବଳ ଗୋଟିଏ ଛଡ଼ା । ତାହା ହେଲା ସଂସ୍କୃତ କଲେଜ । କେଜାଣି କାହିଁକି ସରକାର ସଂସ୍କୃତ କଲେଜର ପରିଚାଳନା ଦାୟିତ୍ୱ ହାତକୁ ନେଲେ ନାହିଁ । ଅନୁଷ୍ଠାନଟି ଅମାତା ପୁଅ ହୋଇ ପଡ଼ିଲା । ନା ରାଜା, ନା ସରକାର କେହି ତାହାର ପରିଚାଳକ ହେଲେ ନାହିଁ । ଫଳରେ ନୂତନ ଭାବେ ଏକ ସମିତି ଗଠିତ ହୋଇ ପରିଚାଳନା ଭାର ହାତକୁ ନେଲେ ଯାହାର ଆର୍ଥିକ ଅଭାବ ଅତ୍ୟନ୍ତ ଉତ୍କଟ ଥିଲା । ସେ ଅବସ୍ଥାରେ ତାଙ୍କୁ

ଅବୈତନିକ ଅଧ୍ୟକ୍ଷ ଭାବେ କାର୍ଯ୍ୟ ତୁଲାଇବାକୁ ଅନୁରୋଧ କରାଗଲା । କିନ୍ତୁ ଅବସ୍ଥା ଦୃଷ୍ଟିରୁ ସେ ଅସାମର୍ଥ୍ୟ ପ୍ରକାଶ କରି ଅନ୍ୟନ୍ତ ଶିକ୍ଷକ ଭାବେ କାର୍ଯ୍ୟ କରିବାକୁ ପସନ୍ଦ କଲେ । ଯୋଗକୁ ତତ୍କାଳ ଗଞ୍ଜାମ ଜିଲ୍ଲା ବୋର୍ଡ ଅଧୀନସ୍ଥ ହାଇସ୍କୁଲମାନଙ୍କରେ ସେତେବେଳକୁ କେତୋଟି ସଂସ୍କୃତ ଶିକ୍ଷକ ପଦବୀ ଖାଲି ଥିଲା ।

ତେଣୁ ସକାଶେ ବିନା ଦ୍ୱିଧାରେ ସେ ନିବେଦନ କଲେ ଓ ନିଯୁକ୍ତି ପାଇଲେ । କାରଣ ମାସିକ ଦରମା ବିନା ସଂସାର ଚଳାଇବା ତାଙ୍କ ପକ୍ଷେ ସମ୍ଭବ ନଥିଲା । ଗଞ୍ଜାମ ଜିଲ୍ଲା ସୋରଡ଼ା ହାଇସ୍କୁଲରେ ତାଙ୍କୁ ସଂସ୍କୃତ ଶିକ୍ଷକ ଭାବେ ଅବସ୍ଥାପିତ କରାଗଲା । ସେଠାରେ ରହି ସେ ଆନ୍ଧ୍ର ବିଶ୍ୱବିଦ୍ୟାଳୟରେ ବି. ଏ. ପରୀକ୍ଷା ଦେବା ପାଇଁ ଯେତେବେଳେ ନିବେଦନ କରନ୍ତି ତାଙ୍କୁ ସେଠାରୁ ଅନୁମତି ମିଳିଲା ନାହିଁ । କାରଣ ତାଙ୍କର ଅତିରିକ୍ତ ବିଷୟ (ଅପ୍ସନାଲ) ଥିଲା ଓଡ଼ିଆ ସହିତ ଇତିହାସ । ସେହିବର୍ଷ ଓଡ଼ିଆ ନେଇଥିବା ପିଲାଙ୍କୁ ବି. ଏ. ପରୀକ୍ଷାରେ ବସିବା ନିଷିଦ୍ଧ କରି ଆନ୍ଧ୍ର ବିଶ୍ୱବିଦ୍ୟାଳୟରେ ନିୟମ ପ୍ରଣୟନ କରାଯାଇଥିଲା । ତେଣୁ ସେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ (B. H. U.) ପକ୍ଷରୁ ସଂସ୍କୃତ ସହିତ ଇତିହାସ ବିଷୟ ନେଇ ପରୀକ୍ଷା ଦେବାକୁ ମନସ୍ଥ କଲେ । ଏହା ଥିଲା ୧୯୫୧ ମସିହାର କଥା ।

ଅଭାଗା ଯୁଆଡ଼େ ଦୁର୍ଦ୍ଦଶା ସିଆଡ଼େ ଗୋଡ଼େଇଥାଏ । ଏ ମଧ୍ୟରେ ପୁଣି ଜିଲ୍ଲା ବୋର୍ଡର ଅର୍ଥାଭାବ ଯୋଗୁ କେତେଜଣ ଶିକ୍ଷକଙ୍କୁ ଛଟେଇ କରିବାପାଇଁ ଯୋଜନା କରାଗଲା । ସେଥିରେ ଥିଲେ ତିନିଜଣ ସଂସ୍କୃତ ଶିକ୍ଷକ ଯାହା ମଧ୍ୟରେ ଶ୍ରୀଯୁକ୍ତ ପାଢ଼ୀ ମଧ୍ୟ ଜଣେ । କିନ୍ତୁ ଈଶ୍ୱରଙ୍କ ଲୀଳା ଅଦ୍ଭୁତ । ତାଙ୍କ ନିକଟରେ ଗୋଟିଏ ପଟେ ଯେତିକି 'କୁ' ଅନ୍ୟପଟେ ସେତିକି 'ସୁ' ଥାଏ । ବେଣୀମାଧବଙ୍କୁ ଈଶ୍ୱରଙ୍କ ଐକାନ୍ତିକ ଦାନଥିଲା ତାଙ୍କର 'ଯାନ କାନ ଚ ମିନ୍ଦାଣି କର୍ତ୍ତବ୍ୟାନି ଶତାନି ଚ' ନୀତି । ସେଥିଯୋଗୁ ତାଙ୍କ ପ୍ରତି କାହାରି ଅଶ୍ରଦ୍ଧା ନ ଥାଏ ।

ଯେତେବେଳେ ତାଙ୍କର ଚାକିରିରୁ ଛଟେଇ ହେବାର ସମ୍ଭାବନା ଦେଖାଦେଲା ତତ୍ରତ୍ୟ ସକଳ କର୍ମଚାରୀ ତାଙ୍କୁ ଯେ କୌଣସି ଉପାୟରେ ସେଠାରେ ରଖିବାର ପ୍ରୟାସ ଆରମ୍ଭ କରିଦେଲେ । ନିୟମ ଥାଏ, ଏବେ ବି

ଅଛି ବୋଧହୁଏ, ଶ୍ରେଣୀର ସେକ୍ସନ ସଂଖ୍ୟା ଅନୁପାତରେ ଶିକ୍ଷକ ନିଯୁକ୍ତ ହୁଅନ୍ତି । ତାଙ୍କୁ ଆଖିରେ ରଖି ଶିକ୍ଷକମଣ୍ଡଳୀ ପରବର୍ତ୍ତୀ ଶିକ୍ଷାବର୍ଷ ଆରମ୍ଭରୁ ଚତୁର୍ଥ ଶ୍ରେଣୀରେ ଅଧିକା ସେକ୍ସନ୍‌ଟିଏ ଖୋଲିବାପାଇଁ ଆପ୍ରାଣ ଉଦ୍ୟମ କରନ୍ତି ଓ ଛାତ୍ର ସଂଗ୍ରହ କରିବାରେ ଲାଗିପଡ଼ନ୍ତି । ଚତୁର୍ଥ ଶ୍ରେଣୀରେ ନୂଆ ସେକ୍ସନ ଗଢ଼ି ଉଠେ । ତଦନୁସାରେ ପ୍ରଧାନ ଶିକ୍ଷକ ତାଙ୍କୁ ଆଇ.ଏ. ଶିକ୍ଷକ ରୂପେ ସେଠାରେ ନିଯୁକ୍ତ ଦେବାପାଇଁ କର୍ତ୍ତୃପକ୍ଷଙ୍କୁ ପ୍ରସ୍ତାବ ଦିଅନ୍ତି ଓ ତାହା ଗୃହୀତ ହୁଏ । ଫଳରେ ସେ ଆଇ. ଏ. ଶିକ୍ଷକ ରୂପେ ସେଠାରେ ଯୋଗ ଦିଅନ୍ତି । ସେହି ବର୍ଷ ହିଁ କଠୋର ଅଧ୍ୟବସାୟ କରି ବନାରସ ଯାଇ ବି. ଏ. ପରୀକ୍ଷା ଦେଇ ଫେରି ଆସନ୍ତି ।

ପରୀକ୍ଷାରୁ ଫେରିବା ବେଳକୁ ଶିକ୍ଷା ବର୍ଷ ଶେଷ ହେବା ଉପରେ ଏବଂ କିଛି ଦିନ ପରେ ଗ୍ରୀଷ୍ମଛୁଟି ଆରମ୍ଭ ହୁଏ । ଛୁଟି ଶେଷରେ ଆସି ପୁଣି କାର୍ଯ୍ୟରେ ଯୋଗଦେବା ବେଳକୁ ଦେଖାଗଲା, ନୂତନ ସେକ୍ସନ ପାଇଁ ଆବଶ୍ୟକ ସଂଖ୍ୟକ ଛାତ୍ର ନାହାନ୍ତି । ଯେହେତୁ ଏଣ୍ଡୁ ଡେଣ୍ଡୁ ଗୋଟାଇ ଆଣି ଆଡ଼ମିସନ୍ କରାଯାଇଥିବା ଛାତ୍ରଙ୍କ ମଧ୍ୟରୁ ଶତକଡ଼ା ଅଶୀଭାଗ ବର୍ଷ ମଝିରେ ପଢ଼ାଛାଡ଼ି ଚାଲିଯାଇଥାନ୍ତି । ଫଳରେ ପୁଣି ଛଟେଇର ଆଶଙ୍କା ଦେଖାଦିଏ । ଏହାଜାଣି ଦିନେ ପ୍ରଧାନ ଶିକ୍ଷକ ତାଙ୍କୁ ଏକାନ୍ତରେ ଡାକି ପଚାରିଲେ । ତୁମର ବି. ଏ. ପରୀକ୍ଷା କଣ ହେଲା ? ଫଳ ବାହାରିଲାଣି ? ଶ୍ରୀଯୁକ୍ତ ପାତ୍ରୀ 'ଜାଣିନି' ବୋଲି କହିବାରୁ ସେ ସାଙ୍ଗେ ସାଙ୍ଗେ କହିଲେ 'ଆଜି ଟେଲିଗ୍ରାମ୍ କର', Reply paid, ତାହାହିଁ ହେଲା ।

ଗୁରିଦିନ ପରେ ଉତ୍ତର ଆସିଲା ସେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଛନ୍ତି । ଶୁଣିବା ମାତ୍ରେ ପ୍ରଧାନ ଶିକ୍ଷକ ତତ୍‌କ୍ଷଣାତ କର୍ତ୍ତୃପକ୍ଷଙ୍କୁ ତାରବାର୍ତ୍ତାରେ ଅନୁରୋଧ କଲେ, ବେଣୀମାଧବ ପାତ୍ରୀ ବି. ଏ. ପାସ୍ କରିଛନ୍ତି, ତାଙ୍କୁ ଗ୍ରାଜୁଏଟ୍ ଶିକ୍ଷକ ଭାବେ ଆଡ୍‌ଜଷ୍ଟ କରାଯାଉ । ଆଠଦିନ ବାଦେ ଉତ୍ତର ଆସିଲା, ତାଙ୍କୁ ପୁରୁଷୋତ୍ତମପୁର ହାଇସ୍କୁଲରେ ଇତିହାସ ଶିକ୍ଷକଭାବେ ନିଯୁକ୍ତ ଦିଆଗଲା । ସମସ୍ତଙ୍କ ମୁହଁରେ ହସ—ସମସ୍ତେ ଆନନ୍ଦିତ । ବନ୍ଧୁ ସୁଖରେ କିଏ ବା ସୁଖୀ ନ ହୁଏ । ସେ ପୁରୁଷୋତ୍ତମପୁର ଆସି ଇତିହାସ ଶିକ୍ଷକ ଭାବେ ଯୋଗ ଦେବାର ଏକ ମାସ ମଧ୍ୟରେ କେତେକ ଅସୁବିଧା ଯୋଗୁ ପାରିଲା ନିକଟସ୍ଥ ଗୁବଣି ହାଇସ୍କୁଲକୁ ବଦଳି କରି

ନେବାପାଇଁ ନାଁ ନ ନିବେଦନ କରନ୍ତି ଏବଂ ତାହା ଗୃହୀତ ହୁଏ । ସେ ଗୁରୁଣ୍ଡି ଆସି ଦେହଗାଣ୍ଡ ଶିକ୍ଷକ ଭାବେ ଯୋଗ ଦିଅନ୍ତି ।

ସେଠାକୁ ଆସିଲା ପରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ୧୯୪୩ ମସିହା ଓଡ଼ିଆ ଏମ୍. ଏ. ପରୀକ୍ଷାରେ ବସିବା ପାଇଁ ଅନୁମତି ପ୍ରାର୍ଥନା କରନ୍ତି । କିନ୍ତୁ ତତ୍କାଳ ନିୟମାନୁଯାୟୀ ସ୍ୱତନ୍ତ୍ର ପରୀକ୍ଷାର୍ଥୀଙ୍କ ସ୍ନାତକ ପରେ ପରୀକ୍ଷା ଦେବାର ଦୁଇବର୍ଷ ନ ପୂରିଲେ ଉପର ପରୀକ୍ଷାରେ ବସିବାର ନ ଥାଏ । କିନ୍ତୁ ସେ ଦୁଇବର୍ଷ ନିସ୍ତାରଣ କଟାଇବା ପାଇଁ ସେ ଇଚ୍ଛୁକ ନଥିଲେ । ତେଣୁ B H. U. ନିୟମରେ ଶିକ୍ଷକତା କରୁଥିବା ପ୍ରାର୍ଥୀଙ୍କୁ ତଳ ପରୀକ୍ଷାର ଦ୍ୱିତୀୟ ବର୍ଷ ଉପରେ ପରୀକ୍ଷା ଦେବାରେ ପ୍ରତିବନ୍ଧକ ନଥିବା ଜାଣି ସେଠାରେ ସଂସ୍କୃତ ଏମ୍. ଏ. ପରୀକ୍ଷା ଦେବାକୁ କୃତସଂକଳ୍ପ ହେଲେ ।

୧୯୪୩ ମସିହା ଏପ୍ରିଲ ନ ତାରିଖରେ ପରୀକ୍ଷା । ସବୁ ପ୍ରସ୍ତୁତ ସରିଛି । ହଠାତ୍ ଫେବୃୟାରୀ ଦଶ ତାରିଖରେ ତାଙ୍କର ମାତୃ ବିୟୋଗ ଘଟେ । ଏହା ତାଙ୍କ ପ୍ରତି ଥିଲା ମାନସିକ, ଶାରୀରିକ ଏବଂ ଆର୍ଥିକ ଦିଗରୁ ଏକ ପ୍ରଚଣ୍ଡ ଆଘାତ । ମାତାଙ୍କ ଅନ୍ତ୍ୟେଷ୍ଟି କ୍ରିୟା ଶେଷରେ ତାଙ୍କର ସ୍ୱାସ୍ଥ୍ୟଭଙ୍ଗ ଘଟେ । ମ୍ୟାଲେରିଆ ଜ୍ୱରରେ ଆକ୍ରାନ୍ତ ହୋଇ ପଡନ୍ତି । ଦୈନନ୍ଦିନ ଜ୍ୱର, ଶରୀରରେ ଖୁବ୍ଣ ଉତ୍ତାପ । ତଥାପି ସେ ପରୀକ୍ଷା ଦାନରୁ ନିବୃତ୍ତ ହେବାର ଚିନ୍ତା କରୁନଥାନ୍ତି । କିନ୍ତୁ ପ୍ରଧାନ ପ୍ରତିବନ୍ଧକ ଥିଲା ଯାତାୟାତ ନିମିତ୍ତ ଆବଶ୍ୟକ ଅର୍ଥର ଅଭାବ । ମାତୃକର୍ମରେ ସଞ୍ଚିତ ସମସ୍ତ ଅର୍ଥ ବ୍ୟୟିତ । ଭଣିଜାର ବାହାଘରରେ ଋଣଗ୍ରସ୍ତ । ଚିନ୍ତା ବନାରସ ଯିବେ କିପରି ? ଏତିକିବେଳେ ଗୁରୁଣ୍ଡି ହାଇସ୍କୁଲର ତତ୍କାଳ ପ୍ରଧାନ ଶିକ୍ଷକ ସ୍ୱର୍ଗତ ଦୟାନିଧି ପଟ୍ଟନାୟକ ସ୍ୱତଃପ୍ରବୃତ୍ତ ହୋଇ ଦିନେ ପଚାରିଲେ— ତୁମେ କଣ ବନାରସ ଯିବ, ପରୀକ୍ଷା ଦେବାକୁ ? ସେ କହିଲେ— ଟଙ୍କା ତ ନାହିଁ, ଯିବି କିମିତି ? 'ଟଙ୍କା କଥା ଚିନ୍ତା କରନି, କିନ୍ତୁ ଏ ବର୍ଷ ନ ଯାଇ ଆରବର୍ଷକୁ ଗଲେ କଣ ହେବନି ? ଭଲଭାବେ ପଢ଼ାପଢ଼ି କରନା'— କହିଲେ ସେ । କିନ୍ତୁ ଏ'ଉତ୍ତର ଦେଲେ "ବୋଉ ସାଙ୍ଗରେ ଫାଷ୍ଟ ଡ଼ିଭିଜନ୍‌ଟା ଚାଲିଗଲା ଆଜ୍ଞା, ସେକେଣ୍ଡଟା ତ ରହିଛି । ଯାଇ ଦେଇ ଆସିବି ।"

'ଠିକ୍ ଅଛି—ମୁଁ ଟଙ୍କା ଦେବ ।' ଏତକ ଶୁଣିଲାମାତ୍ରେ ସେ ଆନନ୍ଦ ଗଦ୍‌ଗଦ୍ ହୋଇ ଉଠିଲେ ଏବଂ ଠିକ୍ ସମୟରେ ବନାରସ ଯିବାପାଇଁ ପ୍ରସ୍ତୁତ ହେଲେ । ଦେହରେ ୧୦୨ ଡିଗ୍ରୀ ଜ୍ୱର, ସାଙ୍ଗରେ ମ୍ୟାଲେରିଆ ଔଷଧ, ସେଠା ହିନ୍ଦୁ ବିଶ୍ୱବିଦ୍ୟାଳୟ ଛାତ୍ରାବାସରେ ରହୁଥିବା ଜଣେ ଅନ୍ତରଙ୍ଗ ବନ୍ଧୁଙ୍କ ବସାରେ ରହି ପରୀକ୍ଷା ଦେବାକୁ ଲାଗିଲେ । ସେତେ-ବେଳେ ଆଜପରି ଦୁଇଦିନ ବା ତିନିଦିନ ଛାଡ଼ିରେ ପରୀକ୍ଷା ହେଉନଥିଲା । ପ୍ରତିଦିନ ପରୀକ୍ଷା, ଛୁଟି ଦିନ ଛଡ଼ା । ସାତଦିନରେ ସାତୋଟି ପତ୍ର ଦେଇ ସାରିଲା ପରେ ଅଷ୍ଟମଦିନ ଦିନ ପରୀକ୍ଷା ହଲରେ ବସିଛନ୍ତି ଭୟଙ୍କର ଭାବେ ଜ୍ୱର ମାଡ଼ି ଆସେ । କଲମ ଚଳାଇବା ସମ୍ଭବ ହୁଏ ନାହିଁ । କଷ୍ଟେମଷ୍ଟେ ଅଧା ଉତ୍ତର ଲେଖି ବସାକୁ ବାହୁଡ଼ିବା ଛଡ଼ା ଗତ୍ୟନ୍ତର ନଥିଲା । ଯାହେଉ ଭଲେ ଭଲେ ଘରକୁ ଫେରି ଆସିଲେ ଏବଂ ପରୀକ୍ଷା ଫଳ ବାହାରିବା ବେଳକୁ ସେ ଦ୍ୱିତୀୟ ଶ୍ରେଣୀ ପାଇଥିଲେ ।

ଏତିକିବେଳେ ପୁଣି ବିଜ୍ଞାପନ ବାହାରିଲା—ପାରଳାଖେମୁଣ୍ଡି ସଂସ୍କୃତ କଲେଜ ପାଇଁ ଜଣେ ସଂସ୍କୃତ ଏମ୍.ଏ ଉପାଧିଧାରୀ ଅଧ୍ୟକ୍ଷ ଆବଶ୍ୟକ । ମାସିକ ଦରମା ଶହେ ଅଶି ଟଙ୍କା । ସେ ସେଥିଲାଗି ଦରଖାସ୍ତ କରନ୍ତି ଓ ଦ୍ୱିତୀୟଥର ପାଇଁ ପୁଣି ଅଧ୍ୟକ୍ଷଭାବେ ଯୋଗ ଦିଅନ୍ତି । ସେଠାକୁ ଗଲାପରେ ସେ ଓଡ଼ିଆ ଏମ୍.ଏ. ପରୀକ୍ଷାରେ ବସିବା ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟଠାରୁ ଅନୁମତି ପ୍ରାର୍ଥନା କରନ୍ତି ଓ ତାହା ମଞ୍ଜୁର ହୁଏ । ଏଇଠି ଫେରେ ଆଉ ଏକ ପ୍ରତିବନ୍ଧକ ସୃଷ୍ଟି ହୁଏ, ଯାହାକୁ ନିୟତି ଛଡ଼ା ଅନ୍ୟକିଛି କୁହାଯାଇ ନ ପାରେ । ଓଡ଼ିଆ ଏମ୍.ଏ. ପରୀକ୍ଷାରେ ଆଠଟି ପତ୍ର ମଧ୍ୟରୁ ଚତୁର୍ଥଟି ଅତିରିକ୍ତ ଭାଷା (Subsidiary Language) ।

ସେଥିପାଇଁ ତିନୋଟି ଭାଷା ନିର୍ଦ୍ଦିଷ୍ଟ, ସଂସ୍କୃତ, ହିନ୍ଦି ଓ ବଙ୍ଗଳା । ଫରମ୍ ପୂରଣ କଲାବେଳେ ସେ ଲେଖିଥିଲେ ଚତୁର୍ଥ ପତ୍ର ପାଇଁ ସଂସ୍କୃତ । ଫିସ୍ ବି ଦିଆ ସାରିଥିଲା । କିନ୍ତୁ ପରୀକ୍ଷା ପୂର୍ବ ପର୍ଯ୍ୟନ୍ତ ଅନୁମତି ପତ୍ର ନ ପାଇବାରୁ ପରୀକ୍ଷା ପୂର୍ବଦିନ ବିଶ୍ୱବିଦ୍ୟାଳୟ କାର୍ଯ୍ୟାଳୟରେ ପହଞ୍ଚିଲେ ଓ ସେ କଥା ଜଣାଇଲେ ।

ସେତେବେଳକୁ ଉତ୍କଳ ବିଶ୍ୱବିଦ୍ୟାଳୟ କଟକ ମେଡ଼ିକାଲ୍ କଲେଜ କ୍ୟାମ୍ପସ୍‌କୁ ଲାଗି ରହିଥିବା କୋଠାରେ ପରିଚାଳିତ ହେଉଥିଲା ।

ସେ ସମୟର ରେଜିଷ୍ଟ୍ରାର୍ ସ୍ୱର୍ଗୀୟ ଗୋପବନ୍ଧୁ ରଥ ସେ କଥା ଶୁଣି ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର ଶ୍ରୀଯୁକ୍ତ ବରାଇଙ୍କୁ ଡକାଇ ସନ୍ଧାନ ନେବାକୁ କହିଲେ । ସେ ତାଙ୍କୁ ପଚାରିଲେ—'ତୁମ ନାଁ କଣ' ? 'ବେଣୀମାଧବ ପାଢ଼ୀ' । ନାଁ ଶୁଣୁ ଶୁଣୁ କହିଦେଲେ 'ତୁମେ ପରୀକ୍ଷା ଦେଇ ପାରିବ ନାହିଁ' । ତୁମେ ସଂସ୍କୃତ ଏମ୍.ଏ ପାଶ୍ କରିଛ, ଅଥଚ ଅତିରିକ୍ତ ଭାଷା ରୂପେ 'ସଂସ୍କୃତ'କୁ ଦର୍ଶାଇଛ ।

ଅତିରିକ୍ତ ଭାଷାର ଷ୍ଟାଣ୍ଡାର୍ଡ ହେଉଛି ଆଇ.ଏ. ଶ୍ରେଣୀର । ଏହା ଶୁଣି ସେ ପଚାରିଲେ—ଏମିତି କି ନିୟମ ଆଜ୍ଞା ! ଧରନିଅନ୍ତୁ ମୁଁ ଯଦି ସଂସ୍କୃତ, ହିନ୍ଦି, ବଙ୍ଗଳା ତିନି ଭାଷାର ଏମ୍.ଏ ଡ଼ିଗ୍ରୀ ଧରି ଓଡ଼ିଆ ଏମ୍.ଏ ପରୀକ୍ଷା ଦେବାକୁ ଆସନ୍ତି ତେବେ ମୁଁ କେଉଁଠା ଅତିରିକ୍ତ ଭାଷା କରି ନିଅନ୍ତି ? ଶ୍ରୀ ବରାଇ ଉତ୍ତର କଲେ । 'ସେମିତି କେଶ୍ ଆସିନି, ଆସିଲେ ଦେଖାଯିବ ।' ଆପଣ ମୋତେ ଏକଥା ଆଗରୁ ଜଣାଇଲେ ନାହିଁ—ଏବେ ମୁଁ ପରୀକ୍ଷା ଦେବାକୁ ଆସିଛି, କ'ଣ କରିବି ତା' ହେଲେ ? ଏକଥା ପଚାରିଲେ । ତାହା ଶୁଣି ସେ କହିଲେ 'ଆଗରୁ ଚିଠି ଯାଇଛି ତୁମ ପାଖକୁ । ଆଚ୍ଛା ଯଦି ତୁମେ ପରୀକ୍ଷା ଦେବାକୁ ନିତାନ୍ତ ଚାହୁଁଛ ତା'ହେଲେ ତୁମ ଫରମ୍‌ରେ ସଂସ୍କୃତ ବଦଳରେ ହିନ୍ଦି ବା ବଙ୍ଗଳା ବୋଲି ଲେଖିଦେଲେ ଅନୁମତି ପାଇଯିବ ।'

ଶୁଣିଲାମାତ୍ରେ ସେ ବିବ୍ରତ ହୋଇ ସାଙ୍ଗେ ସାଙ୍ଗେ 'ସଂସ୍କୃତ' କାଟିଦେଇ 'ବଙ୍ଗଳା' ବୋଲି ଲେଖିଦେଲେ । ତା'ପରେ ସେ ରେଭେନ୍‌ସା କଲେଜରୁ ଅନୁମତି ପତ୍ର ନେଇଯିବା ପାଇଁ ନିର୍ଦ୍ଦେଶ ଦେଲେ । ସେତେବେଳେ ସମସ୍ତ ଉପାଧ୍ୟୋତ୍ତର ପରୀକ୍ଷା ରେଭେନ୍‌ସା କଲେଜରେ ପରିଚାଳିତ ହେଉଥାଏ । ପରୀକ୍ଷା ଆରମ୍ଭ ହୁଏ । ଏମ୍.ଏ ଚତୁର୍ଥ ପତ୍ର । ବଙ୍ଗଳା ସାହିତ୍ୟ । ସେଥିଲାଗି କୌଣସି ବିଧିବଦ୍ଧ ପୁସ୍ତକ ନିର୍ବାଚିତ ନ ଥାଏ । ତାହା କେବଳ ସାଧାରଣ ଭାଷାଜ୍ଞାନ ପରୀକ୍ଷା ପାଇଁ ଉଦ୍ଦିଷ୍ଟ ଥାଏ ।

ଯୋଗକୁ ତାଙ୍କର ବଙ୍ଗଳା ଭାଷାଜ୍ଞାନ ଅତ୍ୟଧିକ ନ ଥିଲେ ମଧ୍ୟ ସେ କୋବେଳକେ ଅଜ୍ଞ ନ ଥିଲେ । କିନ୍ତୁ ଅସୁବିଧା ଥିଲା ଲିପି ପାଇଁ । ସୁନ୍ଦରରୂପେ ବଙ୍ଗଳା ପଢ଼ିପାରୁଥିଲେ ସୁଦ୍ଧା ଅକ୍ଷର ଲେଖିପାରୁ ନ ଥିଲେ । ତା'ହେଲେ ସେତେବେଳେ ଯେ କୌଣସି ଭାଷାକୁ ହିନ୍ଦି ବା ରାଷ୍ଟ୍ରଲିପିରେ ଲେଖିବାର ନିଷେଧ ନ ଥିଲା ।

ଏଣୁ ରାଷ୍ଟ୍ରଲିପି ଅର୍ଥାତ୍ ଦେବନାଗରୀ ଲିପିରେ ବଙ୍ଗଳା ପ୍ରଶ୍ନର ଉତ୍ତର ଲେଖି କର୍ତ୍ତବ୍ୟ ଶେଷ କରିଥିଲେ । ଫଳ ବାହାରିଲା ବେଳକୁ ସେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିବା ଜଣାଗଲା । ଦୁଇଟି ଏମ୍.ଏ. ଡିଗ୍ରୀ ଲାଭ କଲାପରେ ସେ ୧୯୫୫ ମସିହାରେ 'ଓଡ଼ିଶା ପବ୍ଲିକ ସର୍ଭିସ କମିଶନ' ଦ୍ୱାରା ପ୍ରକାଶିତ ବିଜ୍ଞାପନ ଅନୁଯାୟୀ 'ସଂସ୍କୃତ ଓ ଓଡ଼ିଆ' ଅଧ୍ୟାପକ ପଦପାଇଁ ଦରଖାସ୍ତ କରନ୍ତି ଏବଂ ମୌଖିକ ପରୀକ୍ଷା ଦେଇ ୧୯୫୬ ମସିହା ନଭେମ୍ବର ମାସରେ 'ସଂସ୍କୃତ ଓ ଓଡ଼ିଆ' ଅଧ୍ୟାପକ ଭାବେ ସରକାରଙ୍କ ଦ୍ୱାରା ପରିଚାଳିତ ବାରିପଦା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟରେ ଅବସ୍ଥାପିତ ହୁଅନ୍ତି । ଉଲ୍ଲେଖଯୋଗ୍ୟ, ସେତେବେଳକୁ ଏହିପରି ସଂସ୍କୃତ ଏବଂ ଓଡ଼ିଆ ବିଭାଗ ପରସ୍ପରଠାରୁ ଅଲଗା ନଥିଲା । ଯା'ହେଉ ଏହିଠାରୁ ଆରମ୍ଭ ହୁଏ ତାଙ୍କର ଅଧ୍ୟାପକ ଜୀବନ ।

ଏଥିପୂର୍ବରୁ ସେ ପାରଳା ସଂସ୍କୃତ କଲେଜର ଅଧ୍ୟକ୍ଷ ଥିଲାବେଳେ ପ୍ରାଚୀନ କବି କବିଚନ୍ଦ୍ର ରଘୁନାଥ ପରିଚ୍ଛାଙ୍କ ଦ୍ୱାରା ରଚିତ 'ରାଧାମାଧବ ବିଳାସ' ନାମକ ମଧ୍ୟଯୁଗୀୟ କାବ୍ୟର ସରଳଟୀକା ଲେଖି ସର୍ବସାଧାରଣଙ୍କ ବୋଧଗମ୍ୟ ସକାଶେ ବ୍ରହ୍ମପୁର ଶିରୋମଣି ପ୍ରେସ୍‌ରେ ମୁଦ୍ରିତ କରାଇ ଥିଲେ । ପୁଣି ମଧ୍ୟ ତାଙ୍କର ସଂସ୍କୃତ ଶ୍ଳୋକାତ୍ମକ 'ଶ୍ରୀରାମ କର୍ଣ୍ଣାମୃତ'ର ଓଡ଼ିଆ ଗଦ୍ୟାନୁବାଦ ଚିକିଟି ଶ୍ରୀକୃଷ୍ଣ ମଠ ମହନ୍ତଙ୍କ ଦ୍ୱାରା ପ୍ରକାଶ ପାଇଥିଲା । ଆଜି ଏକ ଅବସ୍ଥାଚକ୍ରରେ ପଡ଼ି ଲେଖାହେବା 'ସାଇଣ୍ଟିଫିକ୍-ସପ୍' ନାମରେ ଏକ ରୋମାଞ୍ଚକର ଉପନ୍ୟାସ ଶିରୋମଣି ପ୍ରେସ୍ ଦ୍ୱାରା ଛପା ହୋଇଥିଲା ।

ଖାଲି ସେତିକି ନୁହେଁ ସେ ସମୟରେ ପ୍ରକାଶିତ ବିଭିନ୍ନ ଓଡ଼ିଆ ମାସିକ ପତ୍ରିକା, ଯଥା—ଚତୁରଙ୍ଗ, ଶଙ୍ଖ, ଘଣ୍ଟା, ଉଦୟ, ଝଙ୍କାର ପ୍ରଭୃତିରେ ଉଚ୍ଚମାନର ସାହିତ୍ୟିକ ଓ ସାଂସ୍କୃତିକ ପ୍ରବନ୍ଧମାନ ଲେଖି ଆନନ୍ଦ ଅନୁଭବ କରିଥିଲେ । ଗୋଟିଏ ବାକ୍ୟରେ କହିଲେ ୧୯୪୦ଠାରୁ ୧୯୫୬ ମସିହା ଯାଏ ତାଙ୍କ ସାହିତ୍ୟିକ କୃତି ନାଟକ, କାବ୍ୟ, ଉପନ୍ୟାସ, ପ୍ରବନ୍ଧ, କବିତା, ଅନୁବାଦ ପ୍ରଭୃତି ବିଭିନ୍ନ ବିଭାଗକୁ ସ୍ପର୍ଶକରି ରହିଥିଲା । କିନ୍ତୁ ଯେତେବେଳେ ସେ ଗବେଷଣା କ୍ଷେତ୍ରରେ ଲେଖନୀ ଚାଳନା କରିବାକୁ

ମନସ୍ଥ କରନ୍ତି ସେତେବେଳେ ପୂର୍ବ କଥିତ ବିଷୟମାନ ଆପ୍ତେ ଆପ୍ତେ ଅପସାରିତ ହୋଇପଡ଼େ ।

୧୯୫୫ ମସିହା ବୋଧହୁଏ । ସେତେବେଳକୁ ସେ ଆସିଥାନ୍ତି ସଂସ୍କୃତ କଲେଜର ଅଧ୍ୟକ୍ଷ ଭାବେ । "ଓଡ଼ିଶା ସଂସ୍କୃତ ସମିତି"ର ପ୍ରଧାନ କାର୍ଯ୍ୟାଳୟ ଥାଏ ପୁରୀରେ । ବର୍ଷକୁ ବର୍ଷ ସେଠାରେ ବିଭିନ୍ନ ସଂସ୍କୃତ ପରୀକ୍ଷାରେ ଉତ୍ତୀର୍ଣ୍ଣ ଛାତ୍ରଙ୍କୁ ଉପାଧି ପ୍ରଦାନ କରାଯାଏ । ସମାବର୍ତ୍ତନ ଉତ୍ସବରେ ଜଣେ ବିଶିଷ୍ଟ ବ୍ୟକ୍ତି ସମ୍ମାନିତ ବକ୍ତାଭାବେ ନିମନ୍ତ୍ରିତ ହୁଅନ୍ତି । ଦୀକ୍ଷାନ୍ତ ଭାଷଣରେ ସେ ଉପାଧି ଗ୍ରହୀତାଙ୍କୁ ଆବଶ୍ୟକ ଉପଦେଶ ପ୍ରଦାନ କରନ୍ତି । ସେଠାକୁ ବିଭିନ୍ନ ସରକାରୀ ଓ ବେସରକାରୀ ଗଣ୍ୟମାନ୍ୟ ବ୍ୟକ୍ତିଙ୍କୁ ଆମନ୍ତ୍ରଣ କରାଯାଏ । ସେ ହିସାବରେ ଶ୍ରୀଯୁକ୍ତ ପାଢ଼ୀ ପାରଳା ସଂସ୍କୃତ କଲେଜ ପକ୍ଷରୁ ସେଥିରେ ଯୋଗଦାନ କରିଥାନ୍ତି ।

ସେ ବର୍ଷର ସମାବର୍ତ୍ତନ ଉତ୍ସବରେ ସ୍ୱର୍ଗୀୟ ପଣ୍ଡିତ ନୀଳକଣ୍ଠ ଦାଶ ସମ୍ମାନିତ ବକ୍ତାଭାବେ ସଭାମଣ୍ଡନ କରିଥାନ୍ତି । ଦୀକ୍ଷାନ୍ତ ଭାଷଣ ଆରମ୍ଭ ହୁଏ । ସଭାରେ ଉପସ୍ଥିତ ଉପାଧିପ୍ରାପ୍ତ ଛାତ୍ରଙ୍କଠାରୁ ଆରମ୍ଭ କରି ଉଚ୍ଚଶିକ୍ଷିତ ସର୍ବ୍ୟବୃନ୍ଦ ଉତ୍କର୍ଣ୍ଣ ହୋଇ ଶୁଣୁଥାନ୍ତି ପଣ୍ଡିତ ମହାଶୟଙ୍କ ଓଜସ୍ୱିନୀ ବକ୍ତୃତା । ବିଷୟବସ୍ତୁ 'ଓଡ଼ିଶାର ସଂସ୍କୃତି' । ଭାଷଣ ପ୍ରସଙ୍ଗରେ ସେ ଅନର୍ଗଳ କହି ଚାଲିଥାନ୍ତି ତାଙ୍କ ସ୍ୱଭାବ ସୁଲଭ ଭଙ୍ଗୀରେ, ଦେଶ-ବିଦେଶର ସଂସ୍କୃତି ସହିତ ଭାରତୀୟ ସଂସ୍କୃତିର ତୁଳନାତ୍ମକ ବିଚାର—ଓଡ଼ିଆ ସଂସ୍କୃତିର ମୌଳିକ ବିଶେଷତ୍ୱ ଏବଂ ସେ ମଧ୍ୟରେ ଜଗନ୍ନାଥ ସଂସ୍କୃତିର ଆଲୌକିକ ସାମାନ୍ୟ ବୈଶିଷ୍ଟ୍ୟ ।

କହୁ କହୁ ଠାଏଁ ସେ କହିଲେ—"ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ" ଅର୍ଥାତ୍ ବେଦରେ 'ପୁରୁଷୋତ୍ତମ' ବୋଲି ଯାହା କୁହାଯାଇଛି ତାହା ତାତ୍ତ୍ୱିକ ପୁରୁଷୋତ୍ତମ ବା ପୁରୁଷୋତ୍ତମ ତତ୍ତ୍ୱ; ସେ ସହସ୍ର ଶୀର୍ଷା ପୁରୁଷ ବୋଲି ଅଭିହିତ, ଆଉ 'ଲୋକେ ପୁରୁଷୋତ୍ତମ' ବୋଲି ଯେଉଁ କଥାଟି ସେ ହେଉଛନ୍ତି ଏଠାରେ ଉପାସିତ ପୁରୁଷୋତ୍ତମ— ଏଇ ଜଗନ୍ନାଥ । ଏତକ ଶୁଣିବା ମାତ୍ରେ ତାଙ୍କ ମନରେ ପ୍ରଶ୍ନ ଉଠେ— ଏ ତ ଗୀତାର ବାକ୍ୟ; ଗୀତା ମହାଭାରତର ଅଂଶବିଶେଷ, ତା'

ହେଲେ ଏ ଜଗନ୍ନାଥ କ'ଣ ସେହି ବନରୁ ପୂଜାପାଇ ଆସୁଛନ୍ତି ? ଏହି ପ୍ରଶ୍ନ ମନରେ ଧରି ସେ ଫେରି ଆସନ୍ତି ପାରଳାଖେମୁଣ୍ଡିକୁ ଏବଂ ଅନୁସନ୍ଧାନ ଆରମ୍ଭ ହୁଏ ସେହି ଦିନରେ । ଗବେଷଣା ଚାଲିଲା । ଯେତିକି ଗଭୀରତା ଭିତରକୁ ପ୍ରବେଶ କଲେ ଜଗନ୍ନାଥ ଉପାସନାର ପ୍ରାଚୀନତା ସେତିକି ହୃଦୟଙ୍ଗମ ହେଲା । ପ୍ରମାଣମାନ ଦୃଷ୍ଟିଗୋଚର ହେଲା—ଜଗନ୍ନାଥେ ବୈଷ୍ଣବ, ବୌଦ୍ଧ, ଜୈନ, ଶାକ୍ତ, ଗାଣପତ୍ୟ ବା କୃଷ୍ଣ-ବାସୁଦେବ କୌଣସି ଧର୍ମ ଦାୟର ନୁହନ୍ତି—ଏ ହେଉଛନ୍ତି ଶାବର ଦେବତା ଦାରୁଦେବତା ।

ଫଳରେ ଜଗନ୍ନାଥଙ୍କ ବିଷୟରେ ବିଧିବଦ୍ଧ ଗବେଷଣା କରିବାକୁ ମନସ୍ଥ କରନ୍ତି ଏବଂ ସେ କାର୍ଯ୍ୟରେ ମାର୍ଗଦର୍ଶନ ଦେବା ପାଇଁ ପଣ୍ଡିତ ମହାଶୟଙ୍କ ନିକଟକୁ ଯିବା ପାଇଁ ସ୍ଥିର କରନ୍ତି । କିନ୍ତୁ ସିଏ କେମିତି, ପରିଚୟ ନାହିଁ । ସେ ପୁଣି ପଣ୍ଡିତ ନୀଳକଣ୍ଠ ଦାଶ, ସେ 'ଉତ୍କଳ ଦୁର୍ବାସା' ନାମରେ ଅଭିହିତ । ତେଣୁ ଆପଣାର ଶିକ୍ଷାଗୁରୁ ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମାଙ୍କ ସାହାଯ୍ୟ ପ୍ରାର୍ଥନା କରନ୍ତି । ଯିଏ ପଣ୍ଡିତ ଶର୍ମା ତାଙ୍କୁ ସାଙ୍ଗରେ ନେଇ ପଣ୍ଡିତ ମହାଶୟଙ୍କୁ ଦେଖାକରନ୍ତି ଓ ନିଜ ଶିଷ୍ୟର ଇଚ୍ଛା ଜଣାଇ ଦିଅନ୍ତି । ଗୁଣଗ୍ରାହୀ ପଣ୍ଡିତ ନୀଳକଣ୍ଠ ସମ୍ମତ ଦେବା ଆଗରୁ ପଚାରିଲେ—'କ'ଣ କହିବାକୁ ଚାହଁ ତୁମେ ଜଗନ୍ନାଥଙ୍କ ବିଷୟରେ ।'

ସେ ଯେତେବେଳେ ଶୁଣିଲେ ଜଗନ୍ନାଥଙ୍କୁ 'ଶବର ଦେବତା' ଭାବେ ପ୍ରମାଣିତ କରିବା ହେଉଛି ତାଙ୍କର ଲକ୍ଷ୍ୟ, ସେତେବେଳେ ଶାନ୍ତ ଦୃପ୍ତ ଚକ୍ଷୁରେ ଟିକିଏ ଚାହିଁ ଦୃଢ଼ ସ୍ୱରରେ କହିଲେ—'ଯଦି ପାରିବ ପ୍ରମାଣିତ କର, ମୁଁ ସାହାଯ୍ୟ କରିବି ।' କିନ୍ତୁ ଉପହାସିତ ସ୍ୱରରେ କହିଲେ 'ଆଜ୍ଞା ! ଆପଣ ତ ଜଗନ୍ନାଥଙ୍କୁ ଜୈନ ଧର୍ମର ପ୍ରତୀକ ବୋଲି କହୁଛନ୍ତି,' କହିବା ମଝିରେ କଥାକାଟି ସେ କହିଲେ—"ମୁଁ କହିଲି ବୋଲି କ'ଣ ବେଦର ଗାର ହୋଇଗଲା ! ଯଦି ପ୍ରମାଣ ପାଇବ ମୋ' କଥାକୁ କାଟିଦେବ ।' କି ଉଦାରତା ! କି ସତ୍ୟାନୁସନ୍ଧିତ୍ସା !! କିଏ ବା ମୁଗ୍ଧ ନ ହେବ କାହାର ବା ମଥାନତ ନ ହେବ ସେ କଥାରେ ! ଏ କାଳରେ ସେ କଥା କ'ଣ ଆଶା କରାଯାଇପାରେ ? ଏହା ଥିଲା ସେତେବେଳର ପରମ୍ପରା—ସତ୍ୟବାଦୀ ଯୁଗୀୟ ଶିକ୍ଷାଦାନ ବ୍ୟବସ୍ଥା ।

ସେଠାରୁ ଫେରିଆସି ସେ ଗବେଷଣା ଆରମ୍ଭ କଲେ ସେ ବିଗରେ । ବେଦ, ଶାସ୍ତ୍ର, ଇତିହାସ, ପୁରାଣାଦି ସମେତ ଶିଳାଲେଖ କିମ୍ବଦନ୍ତୀ, ଦେଶ ବିଦେଶର ଜଗନ୍ନାଥ ତତ୍ତ୍ୱ ବିଶେଷଜ୍ଞଙ୍କ ମତାମତ ଆଲୋଚନା କରି 'ଦାରୁ ଦେବତା' ନାମକ ନିବନ୍ଧ ଲେଖିବାରେ ମନୋନିବେଶ କଲେ । ଯେଉଁଠି ସନ୍ଦେହ ହୁଏ ପଣ୍ଡିତ ମହାଶୟଙ୍କ ନିକଟକୁ ଖଣ୍ଡିଏ ଚିଠି ଲେଖିଦେଲା ମାତ୍ରେ କାଳବିଳମ୍ବ ନ କରି ସେ ଉତ୍ତର ଲେଖି ପଠାନ୍ତି । ଆବଶ୍ୟକବେଳେ ପ୍ରତ୍ୟକ୍ଷ କଥାବାର୍ତ୍ତା କରିସିବାକୁ ପରାମର୍ଶ ଦିଅନ୍ତି । ଯେତେବେଳେ ସେ ତାଙ୍କ ନିକଟକୁ ଯାଆନ୍ତି ପଣ୍ଡିତ ମହାଶୟଙ୍କ ପ୍ରଥମ ପ୍ରଶ୍ନ—ଖାଇଛ ? ଆଗେ ଖାଇସାରି ପଛେ ଆଲୋଚନା ହେବ । ଆଜି ଖାଇବାଟା ହେବ ତାଙ୍କର ଘରେ—ତାଙ୍କର ଆଗରେ, କି ସ୍ନେହଶୀଳ ମନ ! ଆଜି ଆଜିର ବିରଳ ଦର୍ଶକ !

ସେ ବିଷୟରେ କିଛି ନ କହିବା ଭଲ ? ଯାହେଉ, ଗୁରୁଙ୍କ ଅନ୍ନ ଖାଇ ଗୁରୁଙ୍କ ଘରେ ରହି ଗବେଷଣା କରିବାର ଯେଉଁ ସୁବିଧା ସେ ପାଇଛନ୍ତି ତା' ବିଷୟରେ ପଚାରିଲେ ସେ କହନ୍ତି—"ଭାଗ୍ୟରେ ଥିଲା; ମୁଁ ନୀଳକଣ୍ଠ ଦାସଙ୍କ ତତ୍ତ୍ୱାବଧାନରେ ନିବନ୍ଧ ଲେଖିଛି ।" ତାଙ୍କ ଉଦାରତା, ସ୍ନେହଶୀଳତା, ଓ ମହାନୁଭବତା ବେଣୀମାଧବଙ୍କ ହୃଦୟରେ ଅଦ୍ୟାପି ଅଙ୍କିତ ହୋଇ ରହିଛି । ତାଙ୍କ ଦୃଷ୍ଟିରେ ସେ ଥିଲେ ପ୍ରକୃତ ଗୁରୁ—ଗୁରୁକୁଳାଶ୍ରମର ମୂର୍ତ୍ତିମନ୍ତ ପ୍ରତୀକ । ଏ ପ୍ରସଙ୍ଗରେ ସେ କହନ୍ତି – ଦିନେ କୁଆଡେ ଆଲୋଚନା ମଝିରେ ପଣ୍ଡିତ ମହାଶୟ ପଚାରିଲେ, ଆଚ୍ଛା ବେଣୀମାଧବ ! ତୁମେ ପରା ମହାଭାରତର କୃଷ୍ଣ କଥା ଲେଖିବାକୁ ଯାଉଛ, କହିପାରିବ, ଏ କୃଷ୍ଣ କିଏ ? ଏ ଚରିତ୍ରଟି ମହାଭାରତରୁ ଉଠାଇଦେଲେ କ'ଣ ଖଣ୍ଡିଆ ହୋଇଯା'ନ୍ତା ? ଏ ଚମକି ପଡ଼ିଲେ, କି ଆଶ୍ଚର୍ଯ୍ୟ କଥା ! ମହାଭାରତରୁ କୃଷ୍ଣ ଚରିତ୍ର ଉଠିଲେ ଚଳିବ କିପରି ? ମନେ ମନେ ଭାବିଲେ ସିନା ଯୁକ୍ତିଯୁକ୍ତ ଉତ୍ତର ପାଇଲେ ନାହିଁ ।

ପରକ୍ଷଣରେ ପଣ୍ଡିତ ମହାଶୟେ କହିଲେ 'ଚିନ୍ତାକର, ଘରକୁ ଯାଇ ଭାବ । କି ଉତ୍ତର ପାଇଲ ଲେଖି ଜଣାଇବ ।' ରାସ୍ତା ସାରା ଅର୍ଥାତ୍ ଭୁବନେଶ୍ୱରରୁ ପାରଳାଯାଏ ଟ୍ରେନର ଭାବନା ମଧ୍ୟରେ ବୁଡ଼ି ରହିଥା'ନ୍ତି । ଶେଷରେ ଘରକୁ ଆସି ପରଦିନ ଚିଠି ଲେଖିଲେ 'ଆଜ୍ଞା ! ମହାଭାରତରୁ

କୃଷ୍ଣ ଚରିତ୍ର ଉଠାଇଦେବା ଆଦୌ ସମ୍ଭବ ନୁହେଁ; କାରଣ ତାକୁ ଉଠାଇ ଦେଲେ ସେ ବଦଳରେ ଆଉ ତ୍ରୀନୋଟି ଚରିତ୍ରର ଅବତାରଣା କରିବାକୁ ପଡ଼ିବ।

୧—ଏକ ପ୍ରସିଦ୍ଧ ସୋମବଂଶୀ ରାଜପରିବାର ମଧ୍ୟରେ ଯୁଦ୍ଧ ହେବାକୁ ଗଲାବେଳେ ଜଣେ ମଧ୍ୟସ୍ଥର ଆବଶ୍ୟକତା ଏଡ଼ାଇ ହେବ ନାହିଁ।

୨—ଯୁଦ୍ଧକ୍ଷେତ୍ରରେ ଅର୍ଜୁନଙ୍କ ଭଳି ମହାରଥୀର ଉପଯୁକ୍ତ ସାରଥି ଭାବେ ଜଣକୁ ନୂଆ ଅବସ୍ଥାପିତ କରିବାକୁ ପଡ଼ିବ।

୩—କୃଷ୍ଣ ଚରିତ୍ର ଉଠିଗଲେ ତାଙ୍କ ପରିବାର ଅର୍ଥାତ୍ ସୁଭଦ୍ରା ପ୍ରଭୃତି ଚରିତ୍ର ଆପେ ଆପେ ଉଠିଯିବ। ସୁଭଦ୍ରା ଉଠିଗଲେ ଅଭିମନ୍ୟୁଙ୍କ ଚରିତ୍ର ରହିବନି। ଅଭିମନ୍ୟୁ ବିନା ପରୀକ୍ଷିତ ଜନ୍ମହେବା ପ୍ରଶ୍ନ ଉଠୁନାହିଁ। ପରୀକ୍ଷିତ ନ ରହିଲେ ସୋମବଂଶ ସେଇଠି ଲୁପ୍ତହେବ। ଏଣୁ କୃଷ୍ଣ ଚରିତ୍ର ମହାଭାରତ ପାଇଁ ଅନିବାର୍ଯ୍ୟ। ପଢ଼ି ପାଇ ପଣ୍ଡିତ ମହାଶୟ ଲେଖିଲେ ଦେଖାହେଲେ ଆଲୋଚନା କରିବା। ଦେଖାହେଲା—ସେ କହିଲେ, 'ଜାଣିବାକୁ ଚାହିଁଥିଲି ତୁମେ କ'ଣ କହୁଛ, ମହାଭାରତକୁ କେତେଦୂର ବୁଝିଛ'। ଏହାଥିଲା ସେ କାଳର ଗୁରୁ-ଶିଷ୍ୟ ସମ୍ପର୍କ।

ଦାରୁଦେବତା ନିବନ୍ଧ ଶେଷ ହେଲା। ପଣ୍ଡିତ ମହାଶୟ ନିବନ୍ଧକୁ ସାଙ୍ଗରେ ନେଇ ତାଙ୍କ ଶ୍ରୀରାମଚନ୍ଦ୍ରପୁର ବାସଭବନକୁ ଯିବାକୁ ବାହାରିଲେ। ସେୟା ହେଲା। ପ୍ରବନ୍ଧ ତାହା ପଦ ପଦ କରି ପଢ଼ାହେଲା। ଶେଯରେ ଶୋଇ ସେ ଶୁଣୁଥାନ୍ତି। କାରଣ, ସେତେବେଳକୁ ସେ ପକ୍ଷାଘାତ ଯୋଗୁ ଶଯ୍ୟାଶାୟୀ। ପଢ଼ା ମଝିରେ ଠାଏଁ 'ଅସୁର' ଶବ୍ଦର ଚର୍ଚ୍ଚା ଥାଏ। "ନ ସୁର ଅସୁର, ଅର୍ଥାତ୍ ଯେ ସୁର ବା ଦେବତା ନୁହେଁ ସେ ଅସୁର।"

ଏତକ ଶୁଣିଲାମାତ୍ରେ ସେ ଚମକିଉଠି କହିଲେ—କିଏ କହୁଛି ଏ କଥା? "ଡଃ ଭଣ୍ଡାରକର"। ସେ ଆଶ୍ଚର୍ଯ୍ୟ ହେଲାପରି କହିଲେ—'ଏଡ଼େ ଲୋକ ହୋଇ କେଡ଼େ ମିଛ କହିଲ ହୋ।' (ତାଙ୍କରି ଭାଷା ଏ) ଟିକିଏ ପରେ ଶ୍ରୀଯୁକ୍ତ ପାଢ଼ୀ ପଚାରିଲେ—ତା'ହେଲେ ସେତକ କାଟିଦେବି ଆଜ୍ଞା? ଶୁଣୁ ଶୁଣୁ ଗର୍ଜିଉଠିଲା ପରି କହିଲେ—କ'ଣ ହେଲା! ଭଣ୍ଡାରକର କହିଛନ୍ତି, କାଟିଦେବ? ନା—ସେମିତି ଥାଉ। ଆଉ ସେଇଠି ଲେଖ—

ପଣ୍ଡିତ ନୀଳକଣ୍ଠ ଦାସ କହନ୍ତି—ଇତ୍ୟାଦି ଇତ୍ୟାଦି । ସେ ଡାକିଲେ—ତାହା ଲେଖାହେଲା । କିନ୍ତୁ ଏ ପରିସ୍ଥିତିରେ ତା'ହେଲେ reference କ'ଣ ଦେବି ? ସେ ଟିକିଏ ହସିକରି କହିଲେ, ଠିକ୍ ଅଛି, ମୁଁ କଳିଙ୍ଗ ରିସର୍ଚ୍ଚ ମ୍ୟାଗାଜିନ୍‌ରେ ତାକୁ ପ୍ରବନ୍ଧ କରି ଛପାଇବି । ତାକୁ ତୁମେ ନେବ । ସେଇଆ ହେଲା, କିନ୍ତୁ ଏ କଥାରୁ କ'ଣ ମନେହୁଏ ନାହିଁ ଯେ, ଯେତେ ମତଭେଦ ରହୁପଛେ ପଣ୍ଡିତପକ୍ଷବାଗୀଶଙ୍କ ମତକୁ ସମ୍ମାନ ଦେବାରେ ହିଁ ରହିଛି ବ୍ୟକ୍ତିର ବ୍ୟକ୍ତିତ୍ୱ, ମଣିଷର ଆତ୍ମସମ୍ମାନ । କିନ୍ତୁ ଆଜି ? ଛାଡ଼ନ୍ତୁ ସେ କଥା ।

ଏହା ପରେ ଶ୍ରୀଯୁକ୍ତ ପାଢ଼ୀ ଦାରୁଦେବତା ନିବନ୍ଧକୁ ପି. ଏଚ୍. ଡି. ଉପାଧି ପାଇଁ ଉପସ୍ଥାପିତ କରନ୍ତି ଓ ଡକ୍ଟରେଟ୍ ଉପାଧି ପାଆନ୍ତି । ଉଲ୍ଲେଖଯୋଗ୍ୟ, ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଦିନରୁ ୧୯୬୦ ମସିହା ଯାଏ ଓଡ଼ିଆ ଭାଷାରେ କୌଣସି ନିବନ୍ଧ ଉପସ୍ଥାପିତ ହୋଇ ସ୍ୱୀକୃତି ପାଇ ନଥିଲା । ପ୍ରଥମକରି 'ଦାରୁଦେବତା' ପଣ୍ଡିତ ନୀଳକଣ୍ଠଙ୍କ ତତ୍ତ୍ୱାବଧାନରେ ଶ୍ରୀଯୁକ୍ତ ବେଣୀମାଧବ ପାଢ଼ୀଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇ ଡକ୍ଟରେଟ୍ ପାଇଁ ମନୋନୀତ ହୋଇଥିଲା ।

ସେତେବେଳକୁ ସେ ପାରଳାରୁ ବଦଳି ହୋଇ ଜୟପୁର ବିକ୍ରମ ଦେବ କଲେଜରେ ଯୋଗ ଦେଇଥାନ୍ତି । ପୁଣି ସେଠାରୁ ଏକବର୍ଷ ନ ପୂରୁଣୁ ପୁନଶ୍ଚ ଓଡ଼ିଶା ସଂସ୍କୃତ ସମିତିର ଶିକ୍ଷା ପରିଦର୍ଶକ ଭାବେ ତାଙ୍କୁ ବଦଳି କରାହୁଏ । ସେଠା କାର୍ଯ୍ୟକଳାପରେ ସନ୍ତୋଷ ଲାଭ ନକରି ସ୍ୱଇଚ୍ଛାରେ ଚଇତ୍ୟ ସାମନ୍ତ ଚନ୍ଦ୍ରଶେଖର କଲେଜକୁ ଅଧ୍ୟାପକ ଭାବେ ପୁଣି ଟ୍ରାନ୍ସଫର ହୋଇ ଆସନ୍ତି । ଏଠା ଅଧ୍ୟାପନା ସେଠା ସହକର୍ମୀ ଡଃ କୃଷ୍ଣପ୍ରସାଦ ମିଶ୍ରଙ୍କ ସହାୟତାରେ 'ଦାରୁଦେବତା' କଟକ ଷ୍ଟୁଡେଣ୍ଟସ ଷ୍ଟୋର୍ସରେ ସ୍ୱର୍ଗୀୟ ପ୍ରକାଶକ ଅନନ୍ତ ମିଶ୍ରଙ୍କ ଦ୍ୱାରା ପ୍ରକାଶିତ ହୁଏ । ସେ ସମୟରେ ସାହିତ୍ୟ ଓ ସଂସ୍କୃତି ସମ୍ବନ୍ଧୀୟ ବିଭିନ୍ନ ଗବେଷଣା ମୂଳକ ପ୍ରବନ୍ଧ ଓଡ଼ିଶାର ପ୍ରସିଦ୍ଧ ପତ୍ରପତ୍ରିକା ମାନଙ୍କରେ ନିୟମିତ ରୂପେ ପ୍ରକାଶ ପାଇଥାଏ । ସେ ମଧ୍ୟରେ ବିଶ୍ୱବିଦ୍ୟାଳୟରୁ ଆରମ୍ଭ କରି ସାଧାରଣ ସଭାସମିତି ପର୍ଯ୍ୟନ୍ତ ଭାଷଣ ଦେବାରେ ବ୍ୟସ୍ତ ରହିବା ଯୋଗୁ କୌଣସି ମୌଳିକ ଗ୍ରନ୍ଥ ରଚନା କରିବା ସମ୍ଭବ ହୋଇପାରି ନଥିଲା ।

୧୯୭୦ ମସିହା ସରକ ସେ ରେଭେନ୍‌ସା କଲେଜକୁ ବଦଳି ହୋଇ ଆସିବା ପରେ ଇତିପୂର୍ବେ ପ୍ରକାଶିତ ପ୍ରବନ୍ଧ ମଧ୍ୟରୁ ଅପେକ୍ଷାକୃତ ଉଚ୍ଚକୋଟିର ପ୍ରବନ୍ଧମାନ ସଂଗ୍ରହ କରି "ଧୀ ଓ ଧିଷଣା" ନାମରେ ଏକ ପୁସ୍ତକ ପ୍ରଣୟନ କଲେ, ଯାହାର ପ୍ରକାଶନ ଭାର ଷ୍ଟୁଡେଣ୍ଟ୍‌ସ ଷ୍ଟୋର୍ ବହନ କଲା । ରେଭେନ୍‌ସା ମହାବିଦ୍ୟାଳୟର କାର୍ଯ୍ୟକାଳ ଏକ ବର୍ଷରେ ସୀମିତ ଥିଲେ ମଧ୍ୟ ସହକର୍ମୀ ଓ ଛାତ୍ର ମହଲରେ ସେ ଅତ୍ୟନ୍ତ ପ୍ରିୟ ହୋଇ ପାରିଥିଲେ । ତା'ପରେ ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଅଧୀନକୁ ଆସି ଓଡ଼ିଆ ବିଭାଗର ରିଡର୍ ରୂପେ ଅବସ୍ଥାପିତ ହେଲେ ଏବଂ ଆଠବର୍ଷ କାର୍ଯ୍ୟକରି ୧୯୭୯ ମସିହା ଡିସେମ୍ବର ମାସରେ ସେଠାରୁ ଅବସର ଗ୍ରହଣ କଲେ ।

ଏହି ସମୟରେ ସେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟକୃତି ଉପରେ "ଭଞ୍ଜୀୟ କାବ୍ୟ ଭାବନା" ନାମରେ ଏକ ପ୍ରାମାଣିକ ସମାଲୋଚନା ଗ୍ରନ୍ଥ ପ୍ରକାଶ କରନ୍ତି । ସେକାଳ ସମାଲୋଚକ ମହଲରେ ଏହା ଚହଳ ସୃଷ୍ଟି କରିଥିଲା । ପରେ ପରେ ସେ ଓଡ଼ିଆ ଭାଷାରେ ତାତ୍ତ୍ୱିକ ଗବେଷଣା କରି ଅଶୋକଙ୍କ ଦ୍ୱାରା ଖୋଦିତ ଧଉଳି ଓ ଜଉଗଡ଼ ଶିଳାଲେଖର ଭାଷା 'ଉଡ୍ରଜା' ବା ପ୍ରାଚୀନ ଓଡ଼ିଆ ବୋଲି ପ୍ରମାଣିତ କରି 'ଉଡ୍ରଜା ପ୍ରାକୃତ' ନାମରେ ଏକ ଗ୍ରନ୍ଥ ପ୍ରକାଶ କଲେ । ତାହା କଟକ 'କିତାବ ମହଲ' ଆନୁକୂଲ୍ୟରେ ମୁଦ୍ରିତ ହେଲା ।

ତାହାର ଆନୁଷଙ୍ଗିକ ପ୍ରମାଣ ଗ୍ରନ୍ଥ ସ୍ୱରୂପ 'ଓଡ଼ିଆ ଭାଷାର ରୂପତତ୍ତ୍ୱ' ନାମରେ ଆଉ ଏକ ପୁସ୍ତକ ରଚନା କରି ସେଥିରେ ଓଡ଼ିଆ ଭାଷାର ପ୍ରକୃତି ଓ ଇତର ଭାଷାଠାରୁ ଏହାର ବୈଶିଷ୍ଟ୍ୟ ଦର୍ଶାଇ ଆର୍ଯ୍ୟ, ଦ୍ରାବିଡ଼ ଓ ଶାବର ଶବ୍ଦ ସମ୍ଭାର ଦ୍ୱାରା ତାହା କିପରି ପରିପୁଷ୍ଟ ଦୃଷ୍ଟାନ୍ତ ପ୍ରତିପାଦନ କଲେ । ତାହା ପ୍ରଥମେ ବ୍ରହ୍ମପୁର 'ପୁସ୍ତକ ଭଣ୍ଡାର' ଓ ପରେ 'କଟକ ନ୍ୟୁ ଷ୍ଟୁଡେଣ୍ଟ୍‌ସ ଷ୍ଟୋର' ଦ୍ୱାରା ପ୍ରକାଶିତ ହୋଇ ରହିଛି । ଡଃ ପାଢ଼ୀଙ୍କର ବିଶ୍ୱବିଦ୍ୟାଳୟ କାର୍ଯ୍ୟକାଳ ମଧ୍ୟରେ ଓଡ଼ିଆ ଭାଷା ଓ ସାହିତ୍ୟ ସମ୍ବନ୍ଧୀ ଗବେଷଣା ଗ୍ରନ୍ଥମାନ ରଚିତ ହେବା ସଙ୍ଗେ ସଙ୍ଗେ ଜଗନ୍ନାଥ ସଂସ୍କୃତି ଉପରେ ନବ ନବ ଚିନ୍ତା ସମ୍ବଳିତ ପ୍ରବନ୍ଧମାନ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହେଉଥିଲା । ଶୁଭାନୁଧ୍ୟାୟୀ ବନ୍ଧୁମାନଙ୍କ

ଅନୁରୋଧରେ ସେ ମଠରୁ ଅପେକ୍ଷାକୃତ ଉଚ୍ଚମାନର ପ୍ରବନ୍ଧ କେତୋଟି ସଂଗୃହୀତ ହୋଇ 'ଜଗନ୍ନାଥ ତତ୍ତ୍ୱ ବିମର୍ଶ' ନାମକ ପୃସ୍ତକଟିଏ ଗ୍ରନ୍ଥ ମନ୍ଦିର ଆନୁକୂଲ୍ୟରେ ଛପାହୁଏ । ତା'ଛଡ଼ା ତାଙ୍କ ତତ୍ତ୍ୱାବଧାନରେ ଆଠଟି ଗବେଷଣାମୂଳକ ନିବନ୍ଧ ଲେଖାଯାଇ ଉତ୍କଳ ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପକ୍ଷରୁ ସଂପୃକ୍ତ ଗବେଷକମାନଙ୍କୁ ଡକ୍ଟରେଟ୍ ଉପାଧି ଦ୍ୱାରା ଭୂଷିତ କରାଯାଇଥିଲା ।

ଉଲ୍ଲେଖଯୋଗ୍ୟ ତାଙ୍କ ଲିଖିତ ଗ୍ରନ୍ଥ ମଧ୍ୟରୁ କେତୋଟି ଯଥା— ଦାରୁଦେବତା, ଓଡ଼ିଆ ଭାଷାର ରୂପତତ୍ତ୍ୱ, ଉତ୍କଳୀ ପ୍ରାକୃତ ଏବଂ ଭଞ୍ଜୀୟ କାବ୍ୟ ଭାବନା, ବିଭିନ୍ନ ବିଶ୍ୱବିଦ୍ୟାଳୟ ଉପାଧ୍ୟୁତ୍ତର ଓଡ଼ିଆ ପାଠ୍ୟକ୍ରମରେ ଷଡ଼୍‌ଦର୍ଶନ ଗ୍ରନ୍ଥ ରୂପେ ସ୍ଥାନ ପାଇ ଆସୁଛି । ଏତଦ୍ ବ୍ୟତୀତ ଆହୁରି ଶତାଧିକ ପ୍ରବନ୍ଧ ଅସ୍ତବ୍ୟସ୍ତ ଭାବେ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ରହିଛି ଯାହା ବିଧିବଦ୍ଧ ପୁସ୍ତକାକାରରେ ମୁଦ୍ରିତ ହୋଇପାରି ନାହିଁ ।

ଏଇଠି ତାଙ୍କର ପାରିବାରିକ ଜୀବନ ସମ୍ବନ୍ଧରେ ଟିକିଏ ସୂଚେଇ ଦେବା ଉଚିତ୍ । ୧୯୫୪ ମସିହା ପର୍ଯ୍ୟନ୍ତ ଶ୍ରୀଯୁକ୍ତ ପାଢ଼ୀଙ୍କର କୌଣସି ସନ୍ତାନସନ୍ତତି ଜନ୍ମ ହୋଇ ନଥିଲେ । ଯଦିଚ ଦଶବର୍ଷରୁ ଊର୍ଦ୍ଧ୍ୱ କାଳ ଅତୀତ ହୋଇ ସାରିଥିଲା । ଫଳରେ ଶ୍ରୀମତୀ ପାଢ଼ୀ ସଦାସର୍ବଦା ବିଷର୍ଣ୍ଣ ମନରେ ଦେବଦେବୀଙ୍କ ପୂଜାରାଧନା କରି ଜୀବନ ଅତିବାହିତ କରୁଥିଲେ । ଯା'ହେଉ ବନାରସରୁ ଫେରି ଆସିବା ପରବର୍ଷ ତାଙ୍କର କନ୍ୟା ସନ୍ତାନଟିଏ ଜନ୍ମନିଏ । ଦୀର୍ଘକାଳ ବ୍ୟବଧାନରେ କୋଳମଣ୍ଡନ କରିଥିବା ଯୋଗୁ ଶିଶୁଟି ସମସ୍ତଙ୍କ ମନରେ ଆନନ୍ଦର ବନ୍ୟା ସୃଷ୍ଟି କରିଥିଲା । କିନ୍ତୁ ଭାଗ୍ୟର ବିଡ଼ମ୍ବନା କେବଳ ପୁତ୍ରସନ୍ତାନଟିଏ ଲାଗି ତାଙ୍କୁ ପରପର ଏଗାରଟି କନ୍ୟାର ଜନକ ହେବାକୁ ପଡ଼ିଥିଲା । ତଥାପି ପୁତ୍ରପ୍ରାପ୍ତି ନୋହିଲା । ଏଗାରଟି କନ୍ୟା ମଧ୍ୟରୁ ଚାରୋଟି ଅକାଳମୃତ୍ୟୁ ବରଣ କଲେ ଏବଂ ଅବଶିଷ୍ଟ ସାତଜଣ ହେଲେ—(୧) ସୂଚନା (M.A., Ph. D., M. Ed.), (୨) ନିଯୁକ୍ତା—(M. A., M. Phil),(୩) ରଚନା—(M. A., M. Phil), (୪) ସ୍ୱସ୍ତିକା—(M. A.), (୫) ଇତିଶ୍ରୀ—(M.A , M. Phil), (୬) ନିସ୍ୱିତ—(M. A , M. Phil)

(୭) ଅନନ୍ତ—(M A) । ଅନ୍ତିମ କନ୍ୟା ଯେ କ 'ଗଜଗଣିତ ବିଜ୍ଞାନରେ ଏମ୍. ଏ. ପାଶ୍ କରି ପାଠାଗାର ବିଜ୍ଞାନର ଉପାଧ୍ୟୂତ୍ତର ଛାତ୍ରୀ ଭାବେ ମାନ୍ଦ୍ରାସ୍ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରେ । ତା'ଛଡ଼ା ଅନ୍ୟ ସମସ୍ତେ ଓଡ଼ିଶାର ବିଭିନ୍ନ ଉଚ୍ଚ ଶିକ୍ଷାନୁଷ୍ଠାନମାନଙ୍କରେ ଅଧ୍ୟାପିକା ଭାବେ ନିଯୁକ୍ତ ଏବଂ ସେ ମଧ୍ୟରୁ ପାଞ୍ଚଜଣ ବିବାହିତ ଜୀବନଯାପନ କରନ୍ତି । ଏହା ହେଉଛି ଡଃ ପାତ୍ରୀଙ୍କ ପାରିବାରିକ ଚିତ୍ର ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଅବସର ଗ୍ରହଣ କରିବା ପରଦିନ ସେ ନୂତନ ଭାବେ ଗଠିତ ସ୍ଥାନୀୟ 'ବ୍ରହ୍ମପୁର ସିଟି ମହାବିଦ୍ୟାଳୟ'ର ଅଧ୍ୟକ୍ଷ ରୂପେ ଦାୟିତ୍ୱ ବହନ କଲେ । ତାହା ଏକ ଘରୋଇ ଅନୁଷ୍ଠାନ । ଫଳରେ ସରକାରୀ ମଞ୍ଜୁରୀଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପରୀକ୍ଷା ପରିଚାଳନା ପର୍ଯ୍ୟନ୍ତ ସକଳ କାର୍ଯ୍ୟ ତାଙ୍କୁ ସମ୍ପନ୍ନ କରିବାକୁ ପଡ଼େ । ଯା'ହେଉ ଅକ୍ଳାନ୍ତ ପରିଶ୍ରମ ଦ୍ୱାରା ଅଙ୍କୁରାବସ୍ଥାରେ ଥିବା ଅନୁଷ୍ଠାନକୁ ମହାବୃକ୍ଷରେ ପରିଣତ କରାଇ ପାରିଥିଲେ । ନବଗଠିତ କଲେଜର ନାନାବିଧ ଜଟିଳ ସମସ୍ୟା ମଧ୍ୟରେ ମଗ୍ନମାନ ରହିବା ଯୋଗୁ ଗବେଷଣା ଓ ଗ୍ରନ୍ଥ ରଚନା କାର୍ଯ୍ୟ ବାଧାପ୍ରାପ୍ତ ହୁଏ ।

ତଥାପି ତାଙ୍କ ଲେଖନୀ ଏକାବେଳକେ ନିସ୍ପ୍ରମାଣ ହୋଇ ପଡ଼ି ନଥିଲା । ପତ୍ର ପତ୍ରିକାରେ ସାମୟିକ ପ୍ରବନ୍ଧମାନ ଲେଖିବା ସଙ୍ଗେ ସଙ୍ଗେ ତାଙ୍କ ସ୍ୱାଭାବିକ ଗବେଷଣା ପ୍ରବୃତ୍ତି ଫଲ୍‌ଗୁଧାରାତୁଲ୍ୟ ଅନ୍ତଃ ପ୍ରବାହିତ ଥିଲା । ତେଣୁ ଅବଲୁପ୍ତ କଳିଙ୍ଗର ପ୍ରାଚୀନ ଇତିବୃତ୍ତି ସନ୍ଧାନରେ ତାଙ୍କ ମନ ସର୍ବଦା ବ୍ୟସ୍ତ ରହୁଥିଲା । ବ୍ରହ୍ମପୁର ସିଟି କଲେଜ ସରକାରଙ୍କ ସମ୍ପୂର୍ଣ୍ଣ ଅନୁଦାନ ପ୍ରାପ୍ତ ଅନୁଷ୍ଠାନରେ ପରିଣତ ହେଲା ଅର୍ଥାତ୍ ଦୀର୍ଘ ଦଶବର୍ଷ ପରେ ସେ ଅଧ୍ୟକ୍ଷ କାର୍ଯ୍ୟଭାର ହସ୍ତାନ୍ତରିତ କରି ଦାୟିତ୍ୱରୁ ମୁକ୍ତ ହୁଅନ୍ତି । ଏହା ପରେ କଳିଙ୍ଗ ସମ୍ବନ୍ଧୀ ଅସମ୍ପୂର୍ଣ୍ଣ ଗବେଷଣାକୁ ସମ୍ପୂର୍ଣ୍ଣ କରିବାରେ ମନୋନିବେଶ କଲେ ଏବଂ ପ୍ରାଚୀନ କଳିଙ୍ଗର ସଂସ୍କୃତି ଉପରେ ଆଧାରିତ 'ପୁରାତନ କଳିଙ୍ଗର ସାମାଜିକ ଇତିବୃତ୍ତି' ନାମରେ ଏକ ଗ୍ରନ୍ଥ ରଚନା କଲେ । ଗ୍ରନ୍ଥଟି କଟକ ଗ୍ରନ୍ଥ ମନ୍ଦିର ଆନୁକୂଲ୍ୟରେ ୧୯୯୨ ମସିହାରେ ଆତ୍ମପ୍ରକାଶ କରେ ।

ଗବେଷଣାମୂଳକ ଗ୍ରନ୍ଥ ଓ ପ୍ରବନ୍ଧ ସକାଶେ ଡକ୍ଟର ପାତ୍ରୀ ଓଡ଼ିଶାର ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନମାନଙ୍କରେ ସମ୍ମାନିତ ହୋଇ ଆସିଛନ୍ତି । ଓଡ଼ିଶା ସାହିତ୍ୟ ଏକାଡେମୀ, ଓଡ଼ିଆ ଲେଖକ ସାମ୍ମୁଖ୍ୟ, ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ କେଦାରନାଥ ଗବେଷଣା ପ୍ରତିଷ୍ଠାନ, ଭୁବନେଶ୍ୱର ଜଗନ୍ନାଥ ସଂସ୍କୃତି ସଂସଦ, ପୁରୀ ଅଭିମନ୍ୟୁ ସାହିତ୍ୟ ସଂସଦ, ଭୁବନେଶ୍ୱର, ଶାରଳା ପୁରସ୍କାର ଅନୁଷ୍ଠାନ, ଭୁବନେଶ୍ୱର, ଜଗନ୍ନାଥ ସଂସ୍କୃତି ଗବେଷଣା ପରିଷଦ, ଭୁବନେଶ୍ୱର, ଫଲ୍‌ଗୁ ସାହିତ୍ୟ ସଂସଦ, ବ୍ରହ୍ମପୁର, ଦୈନିକ ଆଶା ସାହିତ୍ୟ ଆସର, ବ୍ରହ୍ମପୁର, ପ୍ରଭୃତି ଆଦିର ଅନେକ ଅନୁଷ୍ଠାନ ତାଙ୍କୁ ସମ୍ମାନିତ କରିଛନ୍ତି । ସେ ଜଣେ ନୀରବ ସାହିତ୍ୟ ସାଧକ ରୂପେ ସର୍ବତ୍ର ସମାଦୃତ । ବର୍ତ୍ତମାନ ସେ ୭୪ବର୍ଷ ବୟସରେ ପଦାର୍ପଣ କରି ସୁଦ୍ଧା ଅବଲୁପ୍ତ କଳିଙ୍ଗର ପ୍ରାଚୀ ଭାଷାଠାରୁ ପରବର୍ତ୍ତୀ ଯୁଗର ତଥାକଥିତ 'ପାଳି' ଭାଷା ଅଭିନ୍ନ କି ନୁହେଁ ତତ୍‌ସମ୍ବନ୍ଧୀ କାର୍ଯ୍ୟରେ ଗବେଷଣାରତ ।



# ଶିଳ୍ପୀ ଶ୍ରୀଯୁକ୍ତ ଅଜିତକେଶରୀ ରାୟ

ଶ୍ରୀ ସଚ୍ଚିଦାନନ୍ଦ ପାଇକରାୟ

କଟକ ରାଣୀହାଟ ହାଇସ୍କୁଲ ପାର୍ଶ୍ୱରେ ଯେଉଁ 'କ୍ଷେତ୍ରମୋହନ ସେବା ସଦନ'ଟି ଜନସମାଜର ସେବା କରିଆସୁଛି, ଯାହାଙ୍କ ନାମରେ ସେବାସଦନଟି ନାମିତ, ସେହି କ୍ୟାପ୍ଟେନ୍ କ୍ଷେତ୍ରମୋହନ ରାୟଙ୍କ ପୁତ୍ର ଆଜିର ପ୍ରଖ୍ୟାତ ଚିତ୍ରଶିଳ୍ପୀ ଶ୍ରୀଯୁକ୍ତ ଅଜିତ୍‌କେଶରୀଙ୍କ ଜନ୍ମ ୧୯୨୨ ମସିହା ଡିସେମ୍ବର ମାସ ପନ୍ଦରରେ । କ୍ୟାପ୍ଟେନ୍ ରାୟ ଥିଲେ ବିଲାତ ଫେରନ୍ତା ଡାକ୍ତର ଏବଂ ବିଲାତି ସରକାରଙ୍କର ସେନା ବିଭାଗରେ ଡାକ୍ତରୀ ସେବା କରି ପୁରାପୁରି ବିଲାତି ଜୀବନକୁ ବରଣ କରିନେଇଥିଲେ । ସେ ଚାହୁଁଥିଲେ ତାଙ୍କର ସବୁ ପିଲାଏ ଡାକ୍ତର ହେବେ, ବିଲାତ ଯିବେ ଏବଂ ବିଲାତି ଢାଞ୍ଚାରେ ଜୀବନ ଗଢ଼ିବେ । ସେ କେବେ ଚିନ୍ତାକରି ନ ଥିଲେ ଯେ, ତାଙ୍କର ପୁତ୍ର ଅଜିତ୍ କେଶରୀ ଡାକ୍ତର ନ ହୋଇ ଅନ୍ୟକିଛି ହୋଇଯିବେ । ବିଶେଷତଃ ଛୁରି, କଇଁଚି ବଦଳରେ ତୂଳି ଆଉ ରଙ୍ଗଧରି ଜଣେ ମାଷ୍ଟରଟିଏ ହୋଇଯିବ, ଏହା ତାଙ୍କର କଳ୍ପନାର ବାହାରେ ଥିଲା ।

କ୍ୟାପ୍ଟେନ ରାୟଙ୍କର କଳ୍ପନାବିଳାସକୁ ସାର୍ଥକ ରୂପଦେଲେ ତାଙ୍କର ପ୍ରଥମ ଓ ଦ୍ୱିତୀୟା କନ୍ୟା ଡାକ୍ତର ବୀଣା ଦେଈ ଓ ଡାକ୍ତର ଜ୍ୟୋତ୍ସ୍ନା ଦେଈ । ଡାକ୍ତର ବୀଣା ଦେଈ ଓଡ଼ିଶା ସରକାରଙ୍କ ଅଧୀନରେ ଚାକିରି କଲେ ଓ ଡାକ୍ତର ଜ୍ୟୋତ୍ସ୍ନା ଦେଈ ବିଲାତରୁ F.R. COG ପାସ୍‌କରି କଟକ ମେଡ଼ିକାଲ୍ କଲେଜର ପ୍ରଫେସର ଭାବେ ଖ୍ୟାତି ଅର୍ଜନ କଲେ । କ୍ୟାପ୍ଟେନ ରାୟଙ୍କ କ୍ଷତ୍ରିୟ ବଂଶ ପରମ୍ପରା ରକ୍ଷା କଲେ, ତାଙ୍କର ଜ୍ୟେଷ୍ଠ

ପୁଣ ବ୍ରିଗେଡ଼ିୟର ସଂଗ୍ରାମକେଶରୀ ସମ୍ପୁ ସେନା ବାହିନୀରେ ଯୋଗଦେଇ ଏବଂ କନିଷ୍ଠ ପୁଅ ରଣଜିତ୍ କେଶରୀ ବିଲାତରୁ ଇଞ୍ଜିନିଅରିଂ ଡ଼ିଗ୍ରୀ ହାସଲ କରି ବିଲାତରେ ରହିଲେ ।

ମାତା ଶ୍ରୀମତୀ ଦେଈଙ୍କ ଅନ୍ୟତମ ଗୁଣ ଥିଲା ଆଦର୍ଶ ଗୃହିଣୀ ଜୀବନର ସାଧନା । ସେହି ସାଧନାର ପୁଣ୍ୟ ସ୍ୱରୂପ ତାଙ୍କର ଅନ୍ୟତମା କନ୍ୟାସମ୍ପୁ ପ୍ରମିଳା, ଇନ୍ଦିରା ଓ ପ୍ରତିଭା ବୈବାହିକ ଜୀବନ ବରଣ କରିନେଲେ ।

ଅଜିତ୍‌କେଶରୀଙ୍କ ପ୍ରାରମ୍ଭିକ ଶିକ୍ଷା ସ୍ୱଗୃହରୁ ଆରମ୍ଭ ହୋଇଥିଲା । ତା’ପରେ ଷ୍ଟୁଆର୍ଟ ସ୍କୁଲରେ ୧ ବର୍ଷ ପଢ଼ି ୧୯୩୬ ମସିହାରେ ସେ ରେଭେନ୍‌ସା କଲେଜିଏଟ ସ୍କୁଲରେ ସପ୍ତମ ଶ୍ରେଣୀରେ ନାମ ଲେଖାଇଲେ । ରାଣୀହାଟରୁ କଲେଜିଏଟ୍ ସ୍କୁଲ ୫/୬ କିଲୋମିଟର ରାସ୍ତାକୁ ସେ ଖଣ୍ଡିଏ ସାଇକେଲ ଧରି ପାରି ହେଉଥିଲେ । ଅବଶ୍ୟ ସେତେବେଳେ ଆଜିକାର ଭଳି କଟକ ନଗରୀ ଏତେ ଜନଗହଳି ନ ଥିଲା ।

ଛାତ୍ର ଜୀବନରୁ ଅଜିତ୍‌କେଶରୀଙ୍କ ଶିଳ୍ପୀ ପ୍ରତିଭାଟି ଧୀରେ ଧୀରେ ଉନ୍ମୋଚିତ ହେବାକୁ ଲାଗିଲା । ମାତା ଶ୍ରୀମତୀ ଯେତେବେଳେ ମାର୍ଗଶୀର ମାସରେ ଝୋଟି ଲେଖୁଥିଲେ, ବାଳକ ଅଜିତ୍ ତାଙ୍କ ପାର୍ଶ୍ୱରେ ଘଣ୍ଟା ଘଣ୍ଟା ଠିଆ ହୋଇ ଝୋଟି ଲେଖା ଉପଭୋଗ କରୁଥିଲେ । ମାତାଙ୍କ କପୋତ କପୋତୀ ଚିତ୍ର ଦେଖି ସେ ମୁଗ୍ଧ ହୋଇ ଯାଉଥିଲେ । ଥରେ କପୋତ କପୋତୀ ଚିତ୍ର ହଳକ ଉଡ଼ି ବୁଲିଯାଉଥିବାର ସ୍ୱପ୍ନ ଦର୍ଶନ କରି ସେ ନିଜ ଡ୍ରଇଂ ଖାତାରେ ଉଡ଼ନ୍ତା କପୋତ କପୋତୀ ଚିତ୍ର ଆଙ୍କି ମାତାଙ୍କୁ ଆଶ୍ଚର୍ଯ୍ୟ କରି ଦେଇଥିଲେ ।

ଦିନକୁ ଦିନ ତାଙ୍କର ଏହି ଚିତ୍ର ଲେଖିବା ଅଭ୍ୟାସଗତ ହୋଇଗଲା । ସ୍କୁଲରେ ପାଠ ପଢ଼ା ସମୟରେ ସେ ସେଥିପାଇଁ ଅମନଯୋଗୀ ହୋଇ ପଡ଼ୁଥିଲେ । ତାଙ୍କ ମାନସ ଆକାଶରେ ଅନେକ କପୋତ କପୋତୀ ସ୍ୱଚ୍ଛନ୍ଦ ବିହାର କରୁଥିବାର ସେ ଦେଖିପାରୁଥିଲେ । ବେଳେବେଳେ ସେହି କଳ୍ପନାଗୁଡ଼ିକୁ ସାକାର ରୂପ ଦେବା ପାଇଁ ସଙ୍ଗେ ସଙ୍ଗେ ଯେଉଁ ଖାତା ପାଉଥିଲେ ସେଥିରେ ଆଙ୍କି ଦେଉଥିଲେ । ଏହି ଚଳେମି ପାଇଁ ସେ

ଶିଷକଙ୍କଠାରୁ ଅନେକଥର ଭର୍ତ୍ସନା ଶୁଣିଛନ୍ତି । କିନ୍ତୁ ଯେଉଁ ଆତ୍ମା ଶିଳ୍ପୀ ହେବା ପାଇଁ ଜନ୍ମ ନେଇଛି ତା' ପାଖରେ ଏ ଭର୍ତ୍ସନାର ମୂଲ୍ୟ ଅବା କେତେ ।

ଏହି ପାଗଳାମି ପାଇଁ ନିଜ ଗୃହରେ ମଧ୍ୟ ତାଙ୍କୁ କମ୍ ଶାସ୍ତି ଭୋଗିବାକୁ ପଡ଼ିନାହିଁ । ପିତା ମିଲିଟାରୀ ଲୋକ, ଭାରି କଡ଼ା ମିଜାଜ । ମିଲିଟାରୀ ଜୀବନର ନିଷ୍ଠୁର ଶୃଙ୍ଖଳାକୁ ଅଭ୍ୟାସରେ ପରିଣତ କରିନେଇଥିବା କ୍ୟାପଟେନ୍ କ୍ଷେତ୍ରମୋହନ ନିଜ ଗୃହାଙ୍ଗନରେ କ'ଣ ବିଶୃଙ୍ଖଳା ବରଦାସ୍ତ କରିପାରନ୍ତେ । ପିତାଙ୍କର କଡ଼ା ଶାସନ ମଧ୍ୟରେ ଅଜିତଙ୍କୁ ଚଳିବାକୁ ହୁଏ । କାରଣ ଜଣେ ବଳିଷ୍ଠ ଫେରନ୍ତା ଡାକ୍ତର ରୂପେ ଗଢ଼ିହେବାକୁ ଅଜିତ କେଶରୀଙ୍କର ଉପରେ ପ୍ରବଳ ଚାପ । ଏଣୁ ପଢ଼ାପଢ଼ି ପ୍ରତି ସାମାନ୍ୟ ମାତ୍ର ଅବହେଳା ପିତାଙ୍କ ଚକ୍ଷୁରେ ଅସାମାନ୍ୟ ବିଶୃଙ୍ଖଳା ରୂପେ ପ୍ରତିପନ୍ନମାନ ହୁଏ ।

ତଥାପି ଅଜିତକେଶରୀ ପିତାଙ୍କର ରକ୍ତଚକ୍ଷୁ ଅନ୍ତରାଳରେ ମାଟି ମେଞ୍ଚାଏ ଧରି ବସିଯାଆନ୍ତି । ଗାନ୍ଧୀ, ନେହେରୁଙ୍କ ପ୍ରତିମୂର୍ତ୍ତି, ଫୁଲଦାନୀ, କପ୍, ପ୍ଲେଟ ଆଦି କେତେ କଣ ଗଢ଼ା ହୋଇଯାଏ ପିତାଙ୍କର ଅଲକ୍ଷ୍ୟରେ । ପିତାଙ୍କର ତୀକ୍ଷ୍ଣ ଦୃଷ୍ଟି କିନ୍ତୁ ଅଜିତଙ୍କର ଏହି ଗୁପ୍ତକୀର୍ତ୍ତି ଆବିଷ୍କାର କରିନିଏ । ତାହାର ପରିଣାମ ସ୍ୱରୂପ ଅଜିତ ଯେ କେବଳ ତିରସ୍କାର ପାଆନ୍ତି ନାହିଁ । ବେତ୍ରାଘାତ, ମୁଷ୍ଟ୍ୟାଘାତ ଆଦି ବୃଷ୍ଟି ହୋଇଯାଏ ତାଙ୍କ ଉପରେ । ତାଙ୍କର ଜିଦ୍ ବଢ଼େ—ଅଜିତକୁ କଦାପି ଟୋଟାଏ ଡାକ୍ତର ମାଷ୍ଟର କରାଇଦେବେ ନାହିଁ ।

ଅଜିତଙ୍କର ଆଉ କେତୋଟି ତଥାକଥିତ ବଦଗୁଣ ମଧ୍ୟ ଥିଲା । ଖେଳା ଖେଳ କରିବା ପ୍ରତି ତାଙ୍କର ଅସୀମ ଆଗ୍ରହ । ଦୌଡ଼ାଦୌଡ଼ି କରିବାକୁ ସେ ଅତ୍ୟନ୍ତ ଭଲ ପାଉଥିଲେ । ସଙ୍ଗୀତ ପ୍ରତି ତାଙ୍କର ଝୁଙ୍କ କମ ନଥିଲା । ବିଶେଷତଃ ରାଗ ସଙ୍ଗୀତ ପ୍ରତି ତାଙ୍କର ଅନୁରାଗ ବେଶି ।

୧୯୩୫ ମସିହାରେ କଲିକତାର ସ୍କୁଲରୁ ୧୦ମ ଶ୍ରେଣୀ ସମାପ୍ତ କରି ଅଜିତ ଡେରାଡୁନର ଡୁନ୍ ପବ୍ଲିକ୍ ସ୍କୁଲରେ ନାମ ଲେଖାଇଲେ । ପିତାଙ୍କର ଶାଣିତ ଅନୁଶାସନଠାରୁ ଦୂରରେ ରହିବାରୁ ତାଙ୍କର ବ୍ୟକ୍ତିତ୍ୱ ସ୍ୱଚ୍ଛନ୍ଦରେ ବିକଶିତ ହେବାକୁ ଲାଗିଲା । ସୁଧୀରରଞ୍ଜନ ଖାସ୍ତଗିର, ନନ୍ଦଲାଲ ବୋଷ, ଅସିତ କୁମାର ହାଲଦାର, ପୂର୍ଣ୍ଣଚନ୍ଦ୍ର ଚକ୍ରବର୍ତ୍ତୀ, ଅବ୍ଦୁଲ

ରଡ଼ମନ୍, ଚୁକ୍ ଟାଇଙ୍କ ଭଳି ବହୁ ଚିତ୍ରଶିଳ୍ପୀଙ୍କ ସଂସ୍ପର୍ଶରେ ଆସି ସେ ନିଜର ଶିଳ୍ପୀ ପ୍ରତିଭାକୁ ପ୍ରସ୍ଫୁଟିତ କରିବାକୁ ଲାଗିଲେ । ସେଠାରେ ସେ ପେଣ୍ଟିଙ୍ଗ୍ ଓ ମଡ଼େଲିଙ୍ଗ୍ ବିଦ୍ୟା ଅର୍ଜନ କରି ବହୁ ଛବି ଓ ମୂର୍ତ୍ତି ଗଢ଼ିବାକୁ ଲାଗିଲେ, ସ୍କୁଲର କଳା ପ୍ରଦର୍ଶନୀରେ ତାଙ୍କର ବହୁ ଚିତ୍ର ପୁରସ୍କୃତ ହେଲା । ତାଙ୍କର ଏକ ଛବି "Fishing in the Rain"କୁ ନେଇ ଚିତ୍ର ଶିକ୍ଷକ ଖାସ୍ତଗିର୍ ଲଣ୍ଡନର ଏକ ଚିତ୍ର ପ୍ରଦର୍ଶନୀରେ ପ୍ରଦର୍ଶନ କଲେ । ଷ୍ଟେଟ୍ସମ୍ୟାନ୍ ସମ୍ବାଦପତ୍ରରେ ଏହି ଚିତ୍ରଟିର ଅଭୂତପୂର୍ବ ପ୍ରଶସ୍ତି ପ୍ରକାଶିତ ହୋଇଥିଲା । ତାଙ୍କର ତତ୍କାଳୀନ ଅନ୍ୟତମ ବିଖ୍ୟାତ ଭାସ୍କର୍ଯ୍ୟ ଥିଲା Sleeping Beauty", ଆହା ଶୟନରତା ଏକ ମନୋହାରିଣୀ ରମଣୀର କି ଏକ ପ୍ରାଣବନ୍ତ ଭଙ୍ଗିମା ।

ସେ ପବ୍ଲିକ୍ ସ୍କୁଲଟି ଥିଲା "English Medium High School" । ତାହାର ସାଧାରଣ ପାଠ୍ୟକ୍ରମ ମଧ୍ୟରେ ଶିଳ୍ପୀତ୍ୱର ଏକ ଅଦ୍ଭୁତ ପରିପ୍ରକାଶ କପରି ସମ୍ଭବ ହେଉଥିଲା ଭାବିଲେ ବିସ୍ମିତ ହେବାକୁ ପଡ଼େ । ତତ୍ ସଙ୍ଗେ ସଙ୍ଗେ ସେଠାରେ ସେ ଜଣେ ଅସାମାନ୍ୟ କ୍ରୀଡ଼ାବିତ୍ ଭାବେ ପରିଚିତ ଥିଲେ । ହକି, ଫୁଟବଲ, କ୍ରିକେଟ୍ ଆଦି କ୍ରୀଡ଼ାରେ ସେ ମୁଖ୍ୟ ଭୂମିକା ଗ୍ରହଣ କରୁଥିଲେ । ସେ ଥିଲେ ସେଠାରେ ଆଥଲେଟିକ୍ କ୍ୟାପଟେନ୍ ଏବଂ ବକ୍ସିଂ କ୍ୟାପଟେନ୍ । ଏହିଭଳି ବହୁ ବହୁ ବିଦ୍ୟାର ଅଧିକାରୀ ହୋଇ ସେ ସିନିଅର୍ କେମ୍ବ୍ରିଜ୍ ପାଶ୍ କଲେ ୧୯୩୮ ମସିହାରେ ।

ସିନିଅର୍ କେମ୍ବ୍ରିଜ୍ ପାଶ୍ ସାର୍ଟିଫିକେଟ୍ ସହ ପ୍ରଧାନ ଶିକ୍ଷକ A. E. Footଙ୍କ ଆଉ ଏକ ସୁପାରିଶପତ୍ର ସଙ୍ଗରେ ଧରି ଅଜିତ୍ ଫେରିଲେ କଟକ । ତାଙ୍କର ପିତା ସେ୍‌ତବେଳକୁ ମିଲିଟାରୀ ସେବାରୁ ଅବସର ଗ୍ରହଣ କରି ଓଡ଼ିଶା ସରକାରଙ୍କ ଅଧୀନରେ ଡାକ୍ତରୀ କାମ କରୁଥିଲେ ଯାଜପୁରରେ । ଅଜିତ୍ ପିତାଙ୍କ ନିକଟକୁ ଗଲେ ସିନିଅର କେମ୍ବ୍ରିଜ୍ ପାସ୍ କରିଥିବା ବ୍ୟକ୍ତିତ୍ୱର ଦର୍ପ ନେଇ । ପିତା ଦେଖିଲେ ତାଙ୍କ କଳ୍ପନାର ଭାବୀ ବିଲାତ ଫେରନ୍ତା ଡାକ୍ତର ସମ୍ମୁଖରେ ବିଦ୍ୟମାନ । ତାଙ୍କର ସେଦିନ ଜଣେ ରୋଗୀର ପେଟ୍ ଅପରେସନ୍ କରିବାକୁ ଥାଏ । ଭାବୀ ଡାକ୍ତର ପୁତ୍ରଙ୍କୁ

ସେହି ଅପରେସନ୍ ଦେଖାଇବା ପାଇଁ ପାଙ୍ଗରେ ଧରି ସେ ଅପରେସନ୍ ପ୍ରକୋଷ୍ଠ ମଧ୍ୟକୁ ପ୍ରବେଶ କଲେ ।

ରୋଗୀଟି ଶଯ୍ୟାଶାୟୀ ଥାଏ । କର୍ଗ୍ଧ ଦୋଇ ପଢ଼ୁଥିବା ରୋଗୀଟି ସମୀପରେ ଅଜୟ ଯେତେବେଳେ ଡାକ୍ତର ପିତାଙ୍କୁ ଦେଖିଲେ, ସେତେବେଳେ ଅଜୟଙ୍କର ସାମନାରେ ଯମରାଜାଙ୍କ ଦରବାରର ଏକ ଭୟଙ୍କର ଦୃଶ୍ୟ ପ୍ରକଟିତ ହେଲା । ଯେତେବେଳେ ପିତା ଛୁରି ବାହାର କଲେ, ସେତେବେଳେ ପୁତ୍ରଙ୍କ ଅବସ୍ଥା ଶୋଚନୀୟ । ତାଙ୍କର ହୃତ୍ସ୍ପନ୍ଦନ ଦ୍ରୁତତର ହେଲା । ସେ ଆପାଦମସ୍ତକ କମ୍ପିବାକୁ ଲାଗିଲେ । ତାଙ୍କର ସର୍ବାଙ୍ଗ ଘର୍ମାକ୍ତ ହୋଇଗଲା । ସେ ତୁରନ୍ତ ସ୍ଥାନ ଛାଡ଼ି ପଳାଇଗଲେ । ସାମାନ୍ୟ ମାତ୍ର ଛୁରିଟିଏ ଦେଖୁ ଦେଖୁ ଯେଉଁ ପୁତ୍ରଙ୍କର ଏପରି ଦୟନୀୟ ଅବସ୍ଥା, ତାଙ୍କୁ ପୁଣି ଡାକ୍ତର କରାଇବା ପାଇଁ ପିତାଙ୍କର ପ୍ରବଳ ଜିଦ୍ । ପରେ ପିତା କହିଲେ—'ମାଇଚାଆ, ଛୁରି ଦେଖୁ ଦେଖୁ ତ ଏପରି ହେଉଛୁ, ରକ୍ତ ଦେଖିଲେ କଣ ନ ହେବୁ ?'

ପୁତ୍ର ଅଜୟ କମ୍ପିତ ସ୍ୱରରେ କହିଲେ—'ବାପା, ମୁଁ ଆର୍ଟିଷ୍ଟ ହେବି ।'

ବାପା କହିଲେ—'ଭିକ ! ଭିକ ତୁ ମାଗିବୁ, ୫୦ ଟଙ୍କିଆ ଡ୍ରଇଂ ମାଷ୍ଟର ହୋଇ ଭିକ ମାଗିବୁ' । ପୁତ୍ର କହିଲେ—'ମୋତେ ତ ଛବି ଆଙ୍କି-ବାକୁ ଭଲ ଲାଗୁଛି' । ବାପା କହିଲେ—'ପେଟ ପୋଷିବୁ କେମିତି ?'

ଅଜୟ ଯାଇଥିଲେ ବାପାଙ୍କୁ ସିନିଅର କେମ୍ବ୍ରିଜ ପାସ୍‌କରା ମୁହଁ ଦେଖାଇବାକୁ । କିନ୍ତୁ ବାପାଙ୍କର ଭର୍ତ୍ସନାରେ ସେ ମୁହଁ ଆଉ ମୁହଁ ହୋଇ ରହିଲା ନାହିଁ ।

ଏତିକିବେଳେ ପୁତ୍ରଙ୍କର ମନେ ପଡ଼ିଲା ପ୍ରଧାନ ଶିକ୍ଷକ A. E. Foot ପଠାଇବା ପତ୍ରଟିର କଥା । ସିନିଅର କେମ୍ବ୍ରିଜ ପାସ୍ ସାର୍ଟିଫିକେଟ ଦର୍ପକୁ ମଳିନ କରି ଦେଇଥିବା 'ମାଇଚାଆ' ଲାଞ୍ଛନା କବଳରୁ ମୁକ୍ତ ହେବା ପାଇଁ ସେ ବାପାଙ୍କୁ ବଢ଼େଇଦେଲେ ସାର୍ଟିଫିକେଟ ଓ ପ୍ରଧାନ ଶିକ୍ଷକଙ୍କ ସୁପାରିଶ ପତ୍ର ।

କେମ୍ବ୍ରିଜ ପାସ୍ ସାର୍ଟିଫିକେଟଟିକୁ ଗୁରୁତ୍ୱ ନଦେଇ ପ୍ରଧାନଶିକ୍ଷକଙ୍କ ପତ୍ରଟିକୁ ପଢ଼ିଲେ । ସୁପାରିସ୍ ପତ୍ରଟି ପଢ଼ ପଢ଼ୁ ବାପାଙ୍କ ମୁଖମଣ୍ଡଳ ଆହୁରି ଗମ୍ଭୀର ହୋଇ ଉଠିଲା । ସେ ରାଗିଯାଇ କହିଲେ—'ହୁଁ ହେଡ୍‌ମାଷ୍ଟ୍ରଙ୍କଠାରୁ ଖଣ୍ଡିଏ ସୁପାରିସ୍ ପତ୍ର ଲେଖାଇ ଆଣିଛୁ ବୋଲି ଭାବୁଛୁ, ମୁଁ ତୋତେ ଡ୍ରଇଂ ମାଷ୍ଟ୍ର କରିଦେବି । ହେଁ ! ପୁତ୍ରମଣି ଆମର ଡ୍ରଇଂ ମାଷ୍ଟ୍ର ହେବ, ଡ୍ରଇଂ ମାଷ୍ଟ୍ର ! ତୋ' ହେଡ୍‌ମାଷ୍ଟ୍ର କ'ଣ ଲେଖିଛନ୍ତି ଜାଣିଛୁ ? ତୁ କୁଆଡ଼େ ଗୋଟାଏ Talented Artist ହେବୁ ।

କିନ୍ତୁ A.E. Foot ଙ୍କର ସୁପାରିସ୍ ପତ୍ରଟି କ୍ଷେତ୍ରମୋହନ ବାବୁଙ୍କ ମର୍ମକୁ ଆନ୍ଦୋଳିତ କଲା । ଇଂରାଜୀ ସାହେବମାନଙ୍କ ଉପରେ କ୍ଷେତ୍ରମୋହନ ବାବୁଙ୍କ ଦୁର୍ବଳତା ପ୍ରବଳ । ତାଙ୍କ ବିଶ୍ୱାସରେ ସାହେବମାନେ ହିଁ ପ୍ରକୃତ ମଣିଷ । ତେଣୁ A.E. Footଙ୍କ ଅଭିମତକୁ ସେ ସହଜରେ ଉପେକ୍ଷା କରି ପାରିଲେ ନାହିଁ । ଅଜିତଙ୍କ ଭାଗ୍ୟାକାଶରୁ ଘନକୁହୁଡ଼ିକା ଅପସରି ଗଲା । ସେ ୧୯୫୦ ମସିହାରେ ଶାନ୍ତି ନିକେତନର କଳା ଭବନରେ ନାମ ଲେଖାଇଲେ ।

ବିଖ୍ୟାତ ଚିତ୍ରଶିଳ୍ପୀ ନନ୍ଦଲାଲ ବୋଷ ଥିଲେ କଳାଭବନର ଅଧ୍ୟକ୍ଷ । ତାଙ୍କର ସ୍ୱଭାବ ଥିଲା ଋଷିପ୍ରତିମ । ଛାତ୍ରମାନଙ୍କୁ ସେ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । ସେ କହନ୍ତି 'କଳାକାର ଜଣେ ଯୋଗୀ' । ଧ୍ୟାନରତ ଯୋଗୀ ଯେପରି ତା'ର ଆରାଧ୍ୟ ପ୍ରଭୁଙ୍କୁ ହୃଦୟରେ ଧାରଣ କରିଥାଏ, ଜଣେ କଳାକାର ସେହିପରି ତା'ର ପ୍ରସ୍ତାବିତ ଛବିଟିକୁ ହୃଦୟ ମଧ୍ୟରେ ଧାରଣକରି ଛବି ଗଢ଼ୁଥାଏ । ଯୋଗୀ ତା'ର ପରମ ପ୍ରଭୁଙ୍କ ସହିତ ଏକାତ୍ମ ହୋଇ ଯେପରି ପରମାନନ୍ଦ ଲାଭକରେ, କଳାକାର ସେହିପରି ତା'ର ଛବିଟି ସହିତ ଏକାତ୍ମ ହୋଇ ପରମାନନ୍ଦ ଲାଭ କରେ ।

ସେତେବେଳକୁ ନନ୍ଦଲାଲ ବୋଷଙ୍କ ପୁତ୍ର ବିଶ୍ୱରୂପ ବୋଷ ଜାପାନରୁ Wood cut ଶିକ୍ଷା କରି ଫେରିଥାନ୍ତି । ଅଜିତକେଶରୀ ତାଙ୍କଠାରୁ Wood cut, ଓ ଲିନୋକଟ୍ ଶିକ୍ଷା କରିବାର ସୁଯୋଗ ପାଇଲେ ।

ରାମକିଙ୍କର ବେଜ୍ ଥିଲେ ସେଠାକାର ଅନ୍ୟତମ ଅଧ୍ୟାପକ । ତାଙ୍କର ଭାସ୍କର୍ଯ୍ୟ ପାଇଁ ସେ ବହୁ ସୁନାମର ଅଧିକାରୀ ହୋଇଥାନ୍ତି । ତାଙ୍କର

ପ୍ରଭାବରେ ଅଜିତ୍‌କେଶଙ୍କ ବିଭିନ୍ନ ମୂର୍ତ୍ତି ନିର୍ମାଣରେ ଲାଗିପଡ଼ିଲେ । ଅନ୍ୟତମ ଅଧ୍ୟାପକ ବିନୋଦବିହାରୀ ମୁଖାର୍ଜି ଥିଲେ ଏକ ଅଦ୍‌ଭୁତ ଚିତ୍ରଶିଳ୍ପୀ । ତାଙ୍କର ଗୋଟିଏ ଚକ୍ଷୁ ନ ଥିଲା । ଅନ୍ୟ ଚକ୍ଷୁଟି ଥିଲା କ୍ଷୀଣଦୃଷ୍ଟି ସମ୍ପନ୍ନ । ଅବଲୀଳାକ୍ରମେ ସେହି ଚକ୍ଷୁଟି ମଧ୍ୟ ନଷ୍ଟ ହୋଇଗଲା । ସେ ହୋଇଗଲେ ସମ୍ପୂର୍ଣ୍ଣ ଦୃଷ୍ଟିହୀନ । ତଥାପି ସେ ଚିତ୍ର ନିର୍ମାଣରୁ ବିରତ ହୋଇ ନ ଥିଲେ । ତାଙ୍କର ପତ୍ନୀ କାନ୍‌ଭାସ୍ ବୋର୍ଡ଼ଟି ବଢ଼ାଇ ଦିଅନ୍ତି । ଶିଳ୍ପୀ ଯେତେବେଳେ ଯେଉଁ ରଙ୍ଗ ଇଚ୍ଛା କରନ୍ତି ପତ୍ନୀ ସେହି ରଙ୍ଗ ବଢ଼େଇ ଦିଅନ୍ତି । ଚକ୍ଷୁହୀନ ଶିଳ୍ପୀ ଏକାଥରକେ ତୂଳି ଚଳାଇ ଛବିଟିକୁ ଆଙ୍କନ୍ତି ସମ୍ପୂର୍ଣ୍ଣ ନିର୍ଭୁଲ ଭାବେ । ଶିଳ୍ପୀ ପ୍ରମାଣ କରିଦିଅନ୍ତି—ଶିଳ୍ପ ଗଢ଼ିବା ପାଇଁ ବାହ୍ୟ ଚକ୍ଷୁର ଆବଶ୍ୟକତା ନିମିତ୍ତ ମାତ୍ର । ପ୍ରକୃତରେ ଚିତ୍ର ଗଢ଼ିବା ପାଇଁ ଯିଏ ଯଥାର୍ଥରେ ଆବଶ୍ୟକ, ସେ ହେଲା ଅନ୍ତରାତ୍ମାର ଚକ୍ଷୁ ।

ଏହିସବୁ ପ୍ରଖ୍ୟାତ ଶିଳ୍ପୀମାନଙ୍କର ସଂସ୍ପର୍ଶରେ ଆସି ଅଜିତ୍ କେଶଙ୍କର ଅନ୍ତର ଚକ୍ଷୁ ଉନ୍ମୀଳିତ ହୋଇଗଲା । ତାଙ୍କର ଶିଳ୍ପ ଆତ୍ମାର ସ୍ୱାକ୍ଷର ବହନ କରି ପ୍ରକଟିତ ହେବାକୁ ଲାଗିଲା । ସେ ୧୯୦୫ ମସିହାରେ ଡିଷ୍ଟିଂସନ ସହ ଚାରୁକଳାରେ ଡିପ୍ଲୋମା ଲାଭକରି ଉତ୍ତୀର୍ଣ୍ଣ ହେଲେ ।

ତା'ପରେ ଆରମ୍ଭ ହୁଏ ଶିଳ୍ପୀଙ୍କର କର୍ମମୟ ଜୀବନ । ସୁଦୂର ରାଜସ୍ଥାନର ବିକାନିର ସହରସ୍ଥ ସାଦୁଲ୍ ପବ୍ଲିକ୍ ସ୍କୁଲରେ ଚିତ୍ର ଶିକ୍ଷକ ଭାବେ ସେ ନିଯୁକ୍ତି ପାଆନ୍ତି ୧୯୪୫ ମସିହା ଜୁଲାଇ ମାସରେ । ମରୁଭୂମିର ଶୁଷ୍କ ଜଳବାୟୁ ଓ ଜଳକଷ୍ଟତାରେ ୨୩ ବର୍ଷ ବୟସର ଯୁବକ ଅଜିତ୍ ଅତ୍ୟନ୍ତ ଅସ୍ଥିର ହୋଇପଡ଼ନ୍ତି । କାର୍ ନାହିଁ, ମଟର ନାହିଁ, କେବଳ ଓଟ ଆଉ ଓଟ । ଜନ୍ମଭୂମି ଉତ୍କଳର ମଧୁମୟ ରୂପ ତାଙ୍କୁ ଶୟନ ସ୍ୱପନରେ ଅସ୍ଥିର କରୁଥାଏ ।

ସେଠାରେ ଅଧ୍ୟକ୍ଷ ଥିଲେ ରାମଲାଲ ମେହେଟା । ଅକ୍‌ସଫୋର୍ଡ଼ ଏମ୍. ଏ., ଯେ କି ପରବର୍ତ୍ତୀ ସମୟରେ ଓଡ଼ିଶାକୁ କଲେକ୍ଟର ହୋଇ ଆସିଥିଲେ । ତାଙ୍କର ଇଂରାଜୀ ଉଚ୍ଚାରଣ ଓ ସାହେବୀ ଢଙ୍ଗର ଇଂରାଜୀ ଶିକ୍ଷାଦାନ ଅଜିତ୍‌ଙ୍କୁ ଖୁବ୍ ଭଲ ଲାଗୁଥିଲା । କିନ୍ତୁ ମରୁଭୂମିର ନୀରସ ଭୂମିରୂପ ତାଙ୍କୁ ବେଶିଦିନ ସେଠାରେ ରଖାଇ ଦେଲାନାହିଁ । ମାତ୍ର ଛ'ମାସ ପରେ ସେ ଚାକିରିରୁ ଇସ୍ତଫା ଦେଇ କଟକ ଫେରି ଆସିଲେ ।

କଟକ ଫେରିବା ପରେ କ'ଣ ସେ ସୁଖୀ ହୋଇ ପାରିଲେ ? ଗୃହକୋଣ ନାହିଁ, ବେକାର ଜୀବନ । କାମଧନ୍ଦା ନାହିଁ । ଛବି ଆଙ୍କିବାକୁ ମନ ଲାଗୁନାହିଁ । ଏହିପରି ଏକ ବର୍ଷର ବିରକ୍ତିକର ଜୀବନ ପରେ ପୁଣି ଚାକିରି ଖଣ୍ଡିଏ ଯୁଟିଲା । ୧୯୪୭ ମସିହାରେ କଲିକତାସ୍ଥିତ Sales and Promotion କମ୍ପାନୀରେ ସେ Commercial Artist ଭାବେ ଯୋଗ-ଦେଲେ । ସେଠାରେ ତାଙ୍କର କାମ ଥିଲା ଡିଜାଇନ୍ କରିବା, ପୋଷ୍ଟର ନିର୍ମାଣ ଏବଂ ଲେଟରିଙ୍ଗ ଆଦି ପେଶାଦାରୀ କର୍ମ । ଯଥାର୍ଥ କଳାର ବିକାଶ ପାଇଁ ଅନୁକୂଳ ପରିବେଶ ମିଳିଲା ନାହିଁ ସତ୍ୟ, କିନ୍ତୁ କଳାକ୍ଷେତ୍ରର ଯେଉଁ ଦିଗଟି ତାଙ୍କର ଅଜ୍ଞାତ ରହିଥିଲା, ତାହା ବିକାଶଲାଭ କରୁଥିବାରୁ ନୂଆ ନୂଆ ଡିଜାଇନ୍ କରିବା ପାଇଁ ତାଙ୍କର ଆଗ୍ରହ ସୃଷ୍ଟି ହେଲା । ଶାନ୍ତି-ନିକେତନରେ ପଢ଼ିବା ସମୟରେ ତାଙ୍କ ପିତା ମୃତ୍ୟୁବରଣ କରିଥିଲେ ।

କଟକରୁ ତାଙ୍କର ମାଆ ଜଣେ ଲୋକ ପଠାଇ ଖବର ଦେଲେ— ତାଙ୍କର ବିବାହ ତିଥି ସ୍ଥିରହୋଇ ସାରିଛି । ତେଣୁ ତାଙ୍କୁ କଟକ ଯିବାକୁ ହେବ । ଆକସ୍ମିକ ଭାବେ ବିବାହ ପ୍ରସ୍ତାବ ଶୁଣି ସେ ବିଚଳିତ ହୋଇଗଲେ । ବିବାହଟା କ'ଣ ଗୋଟାଏ ଖାମଖେୟାଲି ଖେଳଣା, ଯେତେବେଳେ ଇଚ୍ଛା ସେତେବେଳେ, ଯାହାକୁ ଇଚ୍ଛା ତାହାକୁ ନେଇ ସମ୍ପନ୍ନ କରିପାରିବ । କିନ୍ତୁ ପ୍ରତିବାଦର ଫଳ କିଛି ହେଲା ନାହିଁ । ସେ ବିବାହ କଲେ ୧୯୪୭ ମସିହାରେ ।

ସେତେବେଳକୁ ସୁଧାଂଶୁମାଳୀ ଗୁପ୍ତ ତାଙ୍କର ଭଉଣୀ ହୋଇ ଆସି ସାରିଥାନ୍ତି । ସେ ବେଶ୍ ସୁନ୍ଦରୀ ଥିଲେ ଓ ପରବର୍ତ୍ତୀ କାଳରେ ରାଜନୀତି କ୍ଷେତ୍ରରେ ପ୍ରବେଶ କରି ଗୋବିନ୍ଦପୁର ନିର୍ବାଚନମଣ୍ଡଳୀରୁ ଥରେ ବିଧାୟିକା ରୂପେ ନିର୍ବାଚିତା ହୋଇଥିଲେ ।

ଯେଉଁ ନବାଗତା ଅର୍ଦ୍ଧାଙ୍ଗିନୀ ହୋଇ ତାଙ୍କ ଗୃହାଙ୍ଗନ ମଣ୍ଡନ କଲେ, ସେ ହେଉଛନ୍ତି ପୁରୀ କୋଠକରଣ କୁଳମଣି ଦାସଙ୍କ କନ୍ୟା କିରଣବାଳା ଦାସ । ତାଙ୍କର ବିବାହୋତ୍ତର ନାମ ହେଲା ଗୀତା ଗୁପ୍ତ । ଶିଳ୍ପୀ ଅଜିତ୍‌କେଶରୀ ଯେତେବେଳେ ପତ୍ନୀଙ୍କୁ ପ୍ରଥମ ସାକ୍ଷାତ କଲେ, ସେ ଅଭିଭୂତ ହୋଇଗଲେ । ପତ୍ନୀ ଗୀତା ଗୁପ୍ତ ତାଙ୍କ ସମ୍ମୁଖରେ ଏକ

ସ୍ୱର୍ଣ୍ଣ ପ୍ରତିମା ଭଳି ଦେଖା ଯାଉଥିଲେ । ସତେଅବା ଏକ ଗନ୍ଧର୍ବ କନ୍ୟା ଶିଳ୍ପୀଙ୍କର ଶିଳ୍ପ ପ୍ରତିଭାର ବିକାଶ ପାଇଁ ଅବତରି ଆସିଛନ୍ତି । ଅନିନ୍ଦ୍ୟ ସୁନ୍ଦରୀ ପତ୍ନୀ ଲାଭକରି ଶିଳ୍ପୀଙ୍କର ଅଭିଳାଷ ପୂର୍ଣ୍ଣ ହୋଇଗଲା । ବିବାହ ପୂର୍ବର ବୃଥା ଆଶଙ୍କା କ୍ଷଣକ ମଧ୍ୟରେ ଅନ୍ତର୍ହିତ ହୋଇଗଲେ ।

ବିବାହର ଅଳ୍ପଦିନ ପରେ ସେ ଚାକରି ଶେଷ କଲିକତା ଚାଲିଗଲେ । ସେତେବେଳେ ବଡ଼ଭଉଣୀ ଡାକ୍ତର ବାଣା ଦେଇ ଓ ଡାକ୍ତର ଜ୍ୟୋତ୍ସ୍ନା ଦେଈ ବିଲାତରେ ଉଚ୍ଚତର ଶିକ୍ଷାଲାଭ କରୁଥିଲେ । ବଡ଼ଭାଇ ଫଗ୍ରାମକେଶରୀଙ୍କୁ ସରକାର ବିଲାତ ପଠାଇଥିଲେ । ସାନଭାଇ ରଣଜିତ୍ କେଶରୀ ଉଚ୍ଚତର ଇଞ୍ଜିନିଅରିଂ ଶିକ୍ଷା ପାଇଁ ବିଲାତରେ ଥିଲେ । ଏପରି ସ୍ଥଳେ ଅଜିତ୍‌ଙ୍କର ବିଲାତରେ ପଢ଼ିବାକୁ ଇଚ୍ଛା ହେବା ସ୍ୱାଭାବିକ୍ । ସେ ଜ୍ୟୋତ୍ସ୍ନା ଦେଈଙ୍କ ନିକଟକୁ ପତ୍ରଲେଖି ନିଜ ଅଭିଳାଷ ଜ୍ଞାପନ କଲେ । ଜ୍ୟୋତ୍ସ୍ନା ଦେଈ ଲେଖିଲେ ଯଦି ସେ କୃଷିବିଜ୍ଞାନ ଅଧ୍ୟୟନ କରିବେ ତେବେ ତାଙ୍କୁ ବିଲାତ ଅଣାଯିବ ।

ଜଣେ କଳାବିତ୍‌ଙ୍କ ଭାଗ୍ୟରେ ପୁଣି କୃଷିବିତ୍ ହେବାର ପରିହାସ । କିନ୍ତୁ କଳାବିତ୍‌ଙ୍କର ବିଲାତରେ ପଢ଼ିବାକୁ ପ୍ରବଳ ଆଗ୍ରହ । କ'ଣ କରାଯିବ । କୃଷିବିଜ୍ଞାନ ହେଉପଛେ ବିଲାତଯିବା ସେ ନିତାନ୍ତ ଜରୁରୀ । ସେ ଜ୍ୟୋତ୍ସ୍ନା ଦେଈଙ୍କ ପରାମର୍ଶକୁ ଅବିଳମ୍ୱେ ଗ୍ରହଣ କରି ପତ୍ରପ୍ରେରଣ କରିଦେଲେ ।

୧୯୪୯ ମସିହାରେ ଲଣ୍ଡନସ୍ଥ କୃଷିବିଜ୍ଞାନ କଲେଜରେ ତାଙ୍କର ନାମଲେଖା ହୋଇଗଲା । ଲଣ୍ଡନସ୍ଥ Indian Hotelରେ କିଛିଦିନ ରହି ସେ ଚାଲିଗଲେ Oxford House ହଷ୍ଟେଲକୁ । ନାମ ତାଙ୍କର କୃଷି କଲେଜରେ, ମନ କିନ୍ତୁ କଳାଜଗତରେ । ଲଣ୍ଡନ ଆର୍ଟ ଗ୍ୟାଲେରୀ ବୁଲି ଦେଖିବା ତାଙ୍କର ଏକ ଧରାବନ୍ଧା କାର୍ଯ୍ୟରେ ପରିଣତ ହୋଇଗଲା ।

ଥରେ ଆର୍ଟ ଗ୍ୟାଲେରୀ ବୁଲୁଥିବାବେଳେ ଭାସ୍କର୍ଯ୍ୟ ବିଦ୍ୟା ଅଧ୍ୟୟନ କରୁଥିବା ବିଖ୍ୟାତ ଭାସ୍କର ଶ୍ରୀଯୁକ୍ତ ଶଙ୍ଖ ଚୌଧୁରୀଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ସେ ତାଙ୍କୁ ଶାନ୍ତିନିକେତନରେ ପଢ଼ିବାବେଳେ ଜାଣିଥିଲେ । ସେ ପଚାରିଲେ—'କିହୋ ଅଜିତ୍, ତୁମେ ଏଠାରେ

କମିତ ?' ଅଜିତ୍ର କହିଲେ—'ମୁଁ ଏଠାରେ କୃଷି କଲେଜରେ ପଢ଼ୁଛି ।' ସେ କହିଲେ—'ତୁମେ ଜଣେ ଚିତ୍ରଶିଳ୍ପୀ ହୋଇ କୃଷି କଲେଜରେ ପଢ଼ୁଛ ? ମୁଁ Anglo French Art Centreରେ ତୁମର ନାମ ଲେଖାଇ ଦେବ, ପଢ଼ିବ ? ମୁଁ ସେହି ସେଣ୍ଟରରେ ସ୍ୱଚ୍ଛନ୍ଦ୍ୟ କଳା ଶିକ୍ଷା କରୁଛି । ଅଜିତ୍ର କହିଲେ—'କିନ୍ତୁ ଦେଶଙ୍କୁ ନ ପଚାରି ସେଠାରେ କିପରି ନାମ ଲେଖାଇବ ?'

ଶଙ୍କ ଚୌଧୁରୀ ମୋ' ସାଙ୍ଗରେ ଡାକ୍ତର ସଣ୍ଡା ଦେଶଙ୍କ ନିକଟକୁ ଗଲେ । ତାଙ୍କୁ କହିଲେ—'ଯଦି ଅଜିତ୍‌କୁ କୃଷି କଲେଜରେ ପଢ଼ାଇବାର ଥିଲା, ତେବେ ଭାରତରେ ନ ପଢ଼ାଇ ଲଣ୍ଡନ ଆଣିଲେ କାହିଁକି ? ଜଣେ Born Artist କୁ ଅପ୍ରାକୃତିକ ଭାବେ କୃଷି କଲେଜରେ ଭର୍ତ୍ତିକରି ଛଟପଟ କରିବା କ'ଣ ଭଲ ହୋଇଛି ? ଜଣେ ଆର୍ଟିଷ୍ଟ କେବଳ ଆର୍ଟିଷ୍ଟ ଛଡ଼ା ଆଉ କ'ଣ ହୋଇ ପାରିବ ? ଆପଣଙ୍କ ଭଳି ବଡ଼ ବ୍ୟକ୍ତିଙ୍କୁ ମୁଁ ବା କ'ଣ ବୁଝାଇବ ? ଏହି ସୃଷ୍ଟିଟି ତ ଜଣେ ଆର୍ଟିଷ୍ଟଙ୍କ ଦ୍ୱାରା ଜନ୍ମଲାଭ କରିଛି । ଆର୍ଟିଷ୍ଟମାନେ ଅସମ୍ମାନର ପାତ୍ର ହେବେ କାହିଁକି ?

ଅଜିତ୍‌ଙ୍କର ଚିତ୍ରବିଦ୍ୟା ଶିକ୍ଷା ପାଇଁ ସଣ୍ଡା ଦେଶେ ସମ୍ମତ ହୋଇ-ଗଲେ । Art Centre ରେ ତାଙ୍କର ନାମ ଲେଖା ହୋଇଗଲା । ସେଠାରେ ଅଧ୍ୟକ୍ଷ ଥିଲେ Rozelar Green. ପ୍ରସ୍ତର ଖୋଦେଇରେ ଅଧ୍ୟାପକ ଥିଲେ Sean Crampton, କାଠ ଖୋଦେଇରେ ଅଧ୍ୟାପକ ଥିଲେ John Buckland wright । ସେହି ଉଚ୍ଚକୋଟୀର କଳାକାର-ମାନଙ୍କ ତତ୍ତ୍ୱାବଧାନରେ ଅଜିତ୍ Modelling, Graphic Art ଓ Stone Carving ଆଦି ବିଦ୍ୟା ହାସଲ କଲେ ।

ଛୁଟି ସମୟରେ ୟୁରୋପର ବିଭିନ୍ନ ସ୍ଥାନ ପରିଭ୍ରମଣ କରି Art gallery ମାନ ପରିଦର୍ଶନ କଲେ । ସେତେବେଳେ ପ୍ୟାରିସ, ଜର୍ମାନୀ ଓ ଇଟାଲି ପ୍ରଭୃତି ଦେଶମାନଙ୍କରେ Modern Art Movement ଚାଲିଥାଏ । ବିଭିନ୍ନ 'Art gallery' ରେ ଆଧୁନିକ ଚିତ୍ରକଳା ଆନ୍ଦୋଳନର ପ୍ରଭାବ ବେଶ ପରିଲକ୍ଷିତ ହେଉଥାଏ ।

ୟୁରୋପର ଖାଦ୍ୟପେୟ ତାଙ୍କୁ ଖୁବ୍ ଭଲ ଲଗିଲା । ସେଠାକାର ଜଳବାୟୁ ତାଙ୍କୁ ବେଶ୍ ସୁହାଇଲା । ସେଠାରେ ଅଧିବାସୀମାନେ ଖୁବ୍ ଚଳ୍‌ଚଞ୍ଚଳ ହୃଷ୍ଟପୁଷ୍ଟ ଥିଲେ । ସେମାନଙ୍କ ଚାଲିଚଳନ ମଉଜିଆ ଏବଂ ମଜାଳିଆ ଥିଲା । ସେମାନଙ୍କ ସଙ୍ଗରେ ସ୍କଟଲାଣ୍ଡ ଓ ଆୟରଲାଣ୍ଡ ବୁଲି ପିକ୍‌ନିକ୍ କଲେ, ସିନେମା ଦେଖିଲେ, ଟେନିସ୍ ଖେଳ ଉପଭୋଗ କଲେ । ଥରେ Wimbledon Tennis ପଡ଼ିଆରେ 'World Tennis' ଖେଳ ଦେଖିଯିବା ପାଇଁ ତାଙ୍କର ଜଣେ ଇଉରୋପିଆନ ସାଙ୍ଗ ତାଙ୍କ ପାଇଁ ଟିକେଟ୍ କରି ଦେଇଥିଲେ ।

କଳା ଶିକ୍ଷା ସମାପ୍ତ କରି ୧୯୫୧ ମସିହାରେ ଅଜିତ୍ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲେ । କଳାର ରାଜ୍ୟ ଉତ୍କଳରେ ଚିତ୍ରକଳାର ବିକାଶ ପାଇଁ ସ୍କୁଲଟିଏ ମଧ୍ୟ ନାହିଁ । ତେଣୁ ଅଜିତଙ୍କ ପାଇଁ ଚାକିରି ନାହିଁ । ମା ଶ୍ରୀମତୀ ଦେଇ ରୋଗ ଶଯ୍ୟାରେ । ନୂଆଳି ଜମିଦାରୀ ବୁଝିବାକୁ କେହି ନାହିଁ । ମା'ଙ୍କ ପରାମର୍ଶରେ ପତ୍ନୀ ଗୀତାଙ୍କୁ ନେଇ ଅଜିତ୍ ଗଲେ ନୂଆଳି ଜମିଦାରୀ ବୁଝିବା ପାଇଁ ।

ନୂଆଳିରେ ଅବସ୍ଥାନବେଳେ ଅଜିତ୍ ବିଭିନ୍ନ ପତ୍ରପତ୍ରିକାକୁ ଛବି ପଠାଉଥିଲେ । ସମାଜ, ପ୍ରଜାତନ୍ତ୍ର ଓ ଝଙ୍କାର ଆଦି ପତ୍ରିକାରେ ତାଙ୍କର କେତେକ କାଠ ଖୋଦେଇ ଛବି ପ୍ରକାଶ ପାଇଲା । ଓଡ଼ିଶାର ସ୍ୱନାମଧନ୍ୟ କଥାଶିଳ୍ପୀ ମହାପାତ୍ର ନୀଳମଣି ସାହୁଙ୍କ ଘର ନୂଆଳିରେ । ସେତେବେଳେ ସେ ଜଣେ ଉଦୀୟମାନ କଲେଜ ଛାତ୍ର । ତାଙ୍କର ମଧ୍ୟ ବିଭିନ୍ନ ପତ୍ରପତ୍ରିକାରେ କ୍ଷୁଦ୍ରଗଳ୍ପ ପ୍ରକାଶ ପାଉଥିଲା । ଚିତ୍ରଶିଳ୍ପୀ ଅଜିତ୍ ଏବଂ କଥାଶିଳ୍ପୀ ମହାପାତ୍ର ନୀଳମଣି ସାହୁଙ୍କର ନୂଆଳିରେ ମିଳନ ହେଲା । ସେମାନେ ଦୁଇବନ୍ଧୁ ଭାବରେ ଭାବ ବିନିମୟ ଦ୍ୱାରା ନିଜ ନିଜର ଶିଳ୍ପ ବିକାଶରେ ଅଧିକ ଅନୁପ୍ରାଣିତ ହେଲେ ।

ଅଳ୍ପଦିନ ମଧ୍ୟରେ ଜମିଦାରୀ ଉଚ୍ଛେଦ ଆଇନ ବଳରେ ତାଙ୍କର ଜମିଦାରୀ ଚାଲିଗଲା । ତାଙ୍କ ପାଖରେ ରହିଲା ଅଳ୍ପ କିଛି ଚାଷଜମି । କେବଳ ଚାଷ ଜମିର ଉତ୍ପାଦନକୁ ସମ୍ବଳ କରି ଚଳି ହେଲା ନାହିଁ । ଅଭାବ ମଧ୍ୟରେ କାଳାତିପାତ କରୁଥିବା ବେଳେ ତାଙ୍କର ଦୁଇଟି ସନ୍ତାନ ଜନ୍ମ ହେଲେ । ସେ ଦୁହେଁ ହେଲେ ତାଙ୍କ ସୁଖସନ୍ତୋଷର ଦୁଇଟି ପ୍ରନ୍ଥ । ବର୍ତ୍ତମାନ ସେହି

ପ୍ରଥ ଇଞ୍ଜିନିୟର ଜୟନ୍ତୀର କେଶରୀ ରାଉରକେଲା ଇସ୍ପାତ କାରଖାନାରେ ସହକାରୀ ମ୍ୟାନେଜର୍ ଭାବେ ଅବସ୍ଥାପିତ ଓ କନ୍ୟା ଜୟଶ୍ରୀ କଟକ ଇନ୍ଦିରା ଗାନ୍ଧୀ ମହିଳା କଲେଜରେ ଇତିହାସ ଅଧ୍ୟାପିକା ।

ଯାହାହେଉ ନିଆଳୀରେ ସୁଖ ଦୁଃଖ ମିଶ୍ରିତ ଜୀବନ ଚାଲିଥିବା ବେଳେ କଟକସ୍ଥିତ ଓଡ଼ିଶା ହ୍ୟାଣ୍ଡ୍‌ଲୁମ୍‌ର Designer ଭାବେ ଅଜିତଙ୍କୁ ନିଯୁକ୍ତି ମିଳିଲା । ସେ ସପରିବାର ଫେରିଗଲେ କଟକ ।

୧୯୫୭ ମସିହାରେ ଗଞ୍ଜାମ ଜିଲ୍ଲା ଖଲିକୋଟଠାରେ ସହକାରୀ କଳା ବିଦ୍ୟାଳୟ ପ୍ରତିଷ୍ଠିତ ହେଲା ଓଡ଼ିଶାର ଶିକ୍ଷା ବିଭାଗ ଅଧୀନରେ । ଓଡ଼ିଶା ହାଇକୋର୍ଟର ଅବସରପ୍ରାପ୍ତ ମୁଖ୍ୟ ବିଚାରପତି ତଥା ଓଡ଼ିଶାର ତତ୍କାଳୀନ ମାନ୍ୟବର ଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ଲିଙ୍ଗରାଜ ପାଣିଗ୍ରାହୀ ଅଜିତଙ୍କୁ ଡକାଇ ପଠାଇଲେ । ତାଙ୍କର ଯୋଗ୍ୟତା ବିଚାର କରି ବିନା ଇଣ୍ଟରଭ୍ୟୁରେ ତାଙ୍କ 'ଭାରତୀୟ ଚିତ୍ରକଳା'ର ଅଧ୍ୟାପକ ଭାବେ ନିଯୁକ୍ତି ଦେଲେ ।

ଅତି ମୁଷ୍ଟିମେୟ ଅଧ୍ୟାପକ ତଥା ଇନଷ୍ଟ୍ରକ୍ଟରଙ୍କୁ ନେଇ ଏହି କଳା ବିଦ୍ୟାଳୟ ଆରମ୍ଭ ହେଲା । ଶରତଚନ୍ଦ୍ର ଦେଓ ଅଧ୍ୟକ୍ଷ, ବିପ୍ରଚରଣ ମହାନ୍ତି ମଡ଼େଲିଙ୍ଗ ଅଧ୍ୟାପକ, ରବି ନାୟକ କ୍ରାଫ୍‌ଟ ଡ଼ିଜାଇନ ଇନସପେକ୍ଟର, ସୋମନାଥ ମହାପାତ୍ର ପଥର ଖୋଦେଇ ଇନସ୍‌ପେକ୍ଟର ଓ ହରେକୃଷ୍ଣ ବେହେରା, ପଟ୍ଟେରି ଇନସ୍‌ପେକ୍ଟର ଭାବେ କାର୍ଯ୍ୟ ଆରମ୍ଭ କଲେ । ପରେ ପରେ ଯୋଗ ଦେଲେ ଅନନ୍ତ ପଣ୍ଡା ଟେକନିକାଲ ଅଧ୍ୟାପକ ଭାବେ ଓ ଲୋକନାଥ ଶତପଥୀ କମର୍ଶିଆଲ ଆର୍ଟର ଅଧ୍ୟାପକ ଭାବେ ।

ଉତ୍କଳର ପ୍ରଥମ କଳା ବିଦ୍ୟାଳୟରେ ଆଦ୍ୟଜୀବନ ଥିଲା ଅଭାବ ଅସୁବିଧାରେ ପୂର୍ଣ୍ଣ । କ୍ୱାର୍ଟର୍ସ ନଥିଲା । ଇଲେକ୍‌ଟ୍ରିକ୍‌ଲାଇନ୍ ନଥିଲା । ଅଧ୍ୟାପକ ବିପ୍ରଚରଣ ମହାନ୍ତି ଓ ଅଧ୍ୟାପକ ଅଜିତ୍ କେଶରୀ ଗୋଟିଏ ହଲରେ ରହୁଥିଲେ ।

ତଥାପି କଳା ପ୍ରବଣତାକୁ ଅଗ୍ରସର କରିନେବା ପାଇଁ ଏହି କଳା ବିଦ୍ୟାଳୟ ଥିଲା ଏକ ମୁକ୍ତକ୍ଷେତ୍ର । ଅଧ୍ୟାପକ ଅଜିତକେଶରୀ ଏଠାରେ Water Colour' ରେ ପେଣ୍ଟିଂ କରୁଥିଲେ । ଦିନେ ଅଧ୍ୟକ୍ଷ ଶରତ ଦେଓ କହିଲେ—'ଆପଙ୍କର ପେଣ୍ଟିଂ ବହୁତ bold, ଆପଣ Oil painting

କରୁ ନାହାନ୍ତି ଛାତ୍ରିକ । ଯେମିତିକା water ସେମିତିକା oil, ସେ Oil painting ଆରମ୍ଭ କରିଦେଲେ ।

ଏହାପରେ ତାଙ୍କର ଆରମ୍ଭ ହେଲା ଓଡ଼ିଶାରେ Modern Art Movement. ସେ ପ୍ରଥମେ ତାଙ୍କର ଚିତ୍ର 'The Flight' ର ସ୍କେଚକୁ Modern Art Form ରେ ପକାଇ ପାରମ୍ପାରିକ ଚିତ୍ରକଳା ମଧ୍ୟରୁ ବାହାରି ଆସିଲେ । ଚଢ଼େଇର ଡେଣା ଦୁଇଟିକୁ ଦୁଇଟି ତ୍ରିଭୁଜ ଓ ଦେହକୁ ଗୋଟିଏ ତ୍ରିଭୁଜ କରି ୫ଟି ଚଢ଼େଇ ମାଧ୍ୟମରେ ଛବିଟିକୁ ଗୋଟିଏ Cubic pattern କମ୍ପୋଜିସନରେ ପକାଇଲେ । ତାଙ୍କର ଛାତ୍ରଛାତ୍ରୀ ହେଲେ ତାଙ୍କର ପ୍ରଥମ ସମୀକ୍ଷକ । ସେମାନେ କହିଲେ—'ଏହି କମ୍ପୋଜିସନ୍‌ଟି ଖୁବ୍ ଭଲ ହୋଇଛି ସାର୍ ।'

ପ୍ରକୃତରେ ଏହି ଛବିଟି ୧୯୬୧ ମସିହାରେ ଓଡ଼ିଶା ଲଳିତକଳା ଏକାଡେମୀର ପ୍ରଥମ ଚିତ୍ରପ୍ରଦର୍ଶନୀରେ "Modern Art" ରେ ସ୍ୱର୍ଣ୍ଣ ପଦକ ଲାଭ କଲା । ଉକ୍ତ ପ୍ରଦର୍ଶନୀକୁ ଶାନ୍ତିନିକେତନର ଶିଳ୍ପୀ ସୁକୁମାର ବିଚାରକ ହୋଇ ଆସିଥିଲେ । ଏହିବର୍ଷ ଅଜିତ୍‌କେଶରୀ ଓଡ଼ିଶା ଲଳିତ-କଳା ଏକାଡେମିର ଜଣେ ସଭ୍ୟରୂପେ ନିର୍ବାଚିତ ହୋଇଗଲେ ।

ଓଡ଼ିଶାରେ "Modern Art Movement" ରେ ଅଜିତ କେଶରୀ ଅଗ୍ରଣୀ ହେଲେ । ତାଙ୍କର ଛାତ୍ରଛାତ୍ରୀ ମାନଙ୍କୁ "Modern Art" ନିମନ୍ତେ ଉତ୍ସାହିତ କଲେ । ଅଧ୍ୟାପକ ଅନନ୍ତ ପଣ୍ଡା ଏହି ନୂଆ ଟେକ୍-ନିକରେ ଅନୁପ୍ରାଣିତ ହୋଇ ନିଜ ଶିଳ୍ପୀ ପ୍ରତିଭାକୁ ନୂଆମୋଡ଼ ଦେଲେ । ୧୯୬୨ ମସିହାରେ ଅଜିତ୍‌କେଶରୀଙ୍କର ଆଉ ଦୁଇଟି ଆଧୁନିକ ଛବି "The Shattered Sun ଏବଂ "After Lunch" ଲଳିତ କଳା ଏକାଡେମୀରେ "Best Exhibit Award" ଲାଭ କଲା । ତାଙ୍କର ଅନ୍ୟଏକ "Cubic style"ର ଛବି "The Violinist" କଲିକତା ଫାଇନ୍ ଆର୍ଟ ଏକାଡେମୀରେ Akademy Award ପ୍ରାପ୍ତ ହେଲା । ୧୯୬୩ ମସିହାରେ ଇକ୍ୟୁଷ୍ଟ୍ରିଆନ୍ ଫର୍ମରେ ତାଙ୍କର ଗୋଟିଏ ଘୋଡ଼ା ଛବି ଦିଲ୍ଲୀ ଲଳିତକଳା ଏକାଡେମିରେ ଅନୁଷ୍ଠିତ ଜାତୀୟ କଳାପ୍ରଦର୍ଶନୀ ନିମନ୍ତେ ନିର୍ବାଚିତ ହେଲା । ୧୯୬୪ ମସିହାରେ କଲିକତାରେ ଅନୁଷ୍ଠିତ ସର୍ବଭାରତୀୟ କଳାକାର ସମ୍ମିଳନୀରେ ଓଡ଼ିଶା ତରଫରୁ ସେ ପ୍ରତିନିଧିତ୍ୱ କଲେ ।

ତାଙ୍କର ଏହି "Modern Art Experiment" ରେ ଅନ୍ୟମାନଙ୍କ ଶିଳ୍ପୀମାନେ ସକ୍ରିୟ ଅଂଶ ଗ୍ରହଣ କଲେ ସେମାନେ ହେଲେ ତାଙ୍କର ଛାତ୍ର ପାନନାଥ ପାଠୀ, ଶିବ ପାଣିଗ୍ରାହୀ, ପୂର୍ଣ୍ଣଚନ୍ଦ୍ର ପ୍ରଧାନ, ବ୍ରଜବନ୍ଧୁ ମିଶ୍ର, ଚନ୍ଦ୍ରଶେଖର ଗୁପ୍ତ, ରମେଶ ମହାନ୍ତି । ଏମାନଙ୍କ ମଧ୍ୟରେ ଭୁବନେଶ୍ୱର ସ୍ଥିତ B. K. Art College ର ଅଧ୍ୟକ୍ଷ ପାନନାଥ ପାଠୀ Modern Art କ୍ଷେତ୍ରରେ ଦେଶ ବିଦେଶରେ ଖୁବ୍ ଖ୍ୟାତି ଅର୍ଜନ କରିଛନ୍ତି ।

୧୯୬୬ ମସିହାରେ ଶରତ ଦେଓ ଖଲିକୋଟ କଳା ବିଦ୍ୟାଳୟର ଅଧ୍ୟକ୍ଷ ଦାୟିତ୍ୱରୁ ଅବସର ଗ୍ରହଣ କଲେ ଏବଂ ଅଜିତ୍‌କେଶରୀ ଉକ୍ତ ଅଧ୍ୟକ୍ଷ ପଦକୁ ଉନ୍ନୀତ ହେଲେ । ୧୯୬୭ ରୁ ୧୯୭୦ ଯାଏଁ ଦିଲ୍ଲୀସ୍ଥିତ କେନ୍ଦ୍ରୀୟ ଲଳିତକଳା ଏକାଡେମୀର ସଭ୍ୟ ରୂପେ ସେ ମନୋନୀତ ହେଲେ ।

ଅଧ୍ୟକ୍ଷ ଆସନରେ ଅଧିଷ୍ଠିତ ହେବା ପରଠାରୁ ତାଙ୍କର ମାନସିକ ଶାନ୍ତି ବ୍ୟାହତ ହେଲା । Uneasy lies on the head that wears a crown ଭଳି ଅଧ୍ୟକ୍ଷ ମୁକୁଟଟି ତାଙ୍କୁ କଣ୍ଟକାୟିତ ବୋଧ ହେଲା । ଜଣେ ନବୋନ୍ମେଷ କଳ୍ପନାବିଳାସୀ ଶିଳ୍ପୀ ପାଇଁ ଦାୟିତ୍ୱ ବହନର ଗୁରୁଭାର ଏଭଳି ବୋଧ ହେବା ସ୍ୱାଭାବିକ୍ ।

ଜଣେ ସୁଦକ୍ଷ ଶିଳ୍ପୀ ପ୍ରଶାସନିକ କ୍ଷେତ୍ରରେ ଦକ୍ଷତା ପ୍ରଦର୍ଶନ କରିବା ସମ୍ଭବ ହୋଇ ନ ପାରେ । ସେ ଥିଲେ ଅତ୍ୟନ୍ତ ସରଳ ଓ ସୁଶୀଳ । ତାଙ୍କ ସରଳତାର ସୁଯୋଗ ନେଇ କର୍ମଚାରୀମାନେ କେତେ କଣ କରିଲେ । ଅଫିସ ପରିଚାଳନା କରୁଥିବା କର୍ମଚାରୀମାନେ ନିଜ ନିଜର ସୁବିଧା ହାସଲ କଲେ । ପରିଶେଷରେ ପ୍ରତିକୂଳତା ମଧ୍ୟରେ ଅଜିତ୍‌କେଶରୀ ନାନା ଅଶାନ୍ତିର ଶରବ୍ୟ ହେଲେ ।

ତାଙ୍କ ପତ୍ନୀ ଗୀତା ଗୁପ୍ତ ଥିଲେ ତାଙ୍କ ଜୀବନର ସାର୍ଥକ ସଙ୍ଗିନୀ । ଅଜିତ୍ କେଶରୀଙ୍କ ମନସ୍ତାପ ହରଣ କରିବାରେ ସେ ଥିଲେ ଏକମାତ୍ର ଶାନ୍ତି ପ୍ରଦାୟିନୀ । କଳା ସୃଷ୍ଟି ପାଇଁ ବହୁ ପ୍ରତିବନ୍ଧକ ଦେଖାଦେଲେ ମଧ୍ୟ ପତ୍ନୀଙ୍କ ପ୍ରୋତ୍ସାହନରେ ଅଜିତ୍‌କେଶରୀ ଶିଳ୍ପ ସୃଷ୍ଟି କରିବାରୁ ବଞ୍ଚିତ ହୋଇ ନଥିଲେ । ଅଶାନ୍ତିର ସ୍ତୂପ ଉପରେ ଉପବିଷ୍ଟ ହୋଇ ସେ

ନବନବ ସୃଷ୍ଟି କରି ଚାଲିଥିଲେ । ତାଙ୍କର ବହୁଚିତ୍ର ବିଭିନ୍ନ ପ୍ରଦର୍ଶନୀରେ ପୁରସ୍କୃତ ହୋଇଥିଲା ।

୧୯୬୩ ମସିହାରୁ ତାଙ୍କ ଜୀବନ ଏକ ଭିନ୍ନ ମୋଡ଼ ନେଲା । ପତ୍ନୀ ଗୀତା ରାୟ ପଣ୍ଡିଚେରୀ ଶ୍ରୀଅରବିନ୍ଦ ଆଶ୍ରମ ପରିଦର୍ଶନରେ ଗଲେ । ଶ୍ରୀମା'ଙ୍କୁ ଦର୍ଶନ କଲେ ଓ ସାଧକ ବାବାଜୀ ମହାରାଜଙ୍କ ପ୍ରଭାବରେ ଅନୁପ୍ରାଣିତ ହୋଇ ଆଧ୍ୟାତ୍ମିକ ଜୀବନ ମଧ୍ୟକୁ ଲମ୍ଫ ଦେଲେ । କିଛି ଦିନ ପରେ ସେ ଖଲ୍ଲିକୋଟ ଫେରି ଆସି ଖଲ୍ଲିକୋଟରେ ତାଙ୍କ ବାସ-ଭବନରେ ଶ୍ରୀଅରବିନ୍ଦ ସ୍ଟଡି ସମାଜ ଗଠନ କଲେ । ତାଙ୍କରି ଉଦ୍ୟମରେ ଖଲ୍ଲିକୋଟରେ ଶ୍ରୀଅରବିନ୍ଦଙ୍କ ପୂର୍ଣ୍ଣାଙ୍ଗ ଯୋଗର ମୂଳଭିତ୍ତି ସ୍ଥାପିତ ହେଲା । ଦିବ୍ୟ ଜନନୀ ଶ୍ରୀମାଆଙ୍କ ଆଶୀର୍ବାଦ ଲାଭ କରି ଖଲ୍ଲିକୋଟରେ ଶ୍ରୀଅରବିନ୍ଦଙ୍କ କର୍ମଧାରା ପ୍ରସାରିତ ହେଲା । ଖଲ୍ଲିକୋଟର ବିଧାୟକ ବିନାଥ ସାମନ୍ତରାୟ ଏଥି ଯୋଗାଯୋଗିତ ହେଲେ ଓ କ୍ରମେ ଖଲ୍ଲିକୋଟରେ ଶ୍ରୀଅରବିନ୍ଦ ପାଠଚକ୍ର ଓ ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ଏବଂ ଶ୍ରୀ ଅରବିନ୍ଦଙ୍କ ସମାଧି ମନ୍ଦିର ପ୍ରତିଷ୍ଠିତ ହୋଇ ପାରିଛି ।

ଶିଳ୍ପୀ ଅକ୍ରୂରକେଶରୀଙ୍କ ବାସଭବନ ଏକ ଆଧ୍ୟାତ୍ମିକ ବାତା-ବରଣରେ ପୂର୍ଣ୍ଣ ହୋଇଉଠିଲା । ଧୀରେ ଧୀରେ ତାଙ୍କର ସକଳ ଅଶାନ୍ତି ଦୂରୀଭୂତ ହେଲା । ଯେଉଁମାନେ ଅକ୍ରୂରକେଶରୀଙ୍କ ଦୁର୍ବଳତାର ସୁଯୋଗ ନେଇ ସ୍ୱାର୍ଥ ସାଧନ କରୁଥିଲେ ସେମାନେ ସ୍ୱକର୍ମାନୁଯାୟୀ ପରିଣାମ ଭୋଗ କଲେ । ଅଧ୍ୟକ୍ଷଙ୍କ ଦେହରେ କଳଙ୍କ ଲାଗିଲା ନାହିଁ । ୧୯୮୦ ମସିହା ଡ଼ିସେମ୍ବର ମାସରେ ସେ ସ୍ୱଚ୍ଛନ୍ଦରେ ଅଧ୍ୟକ୍ଷ ପଦରୁ ଅବସର ନେଲେ ।

ଅବସର ଗ୍ରହଣ ପରେ ସେ କଟକରେ ଅବସ୍ଥାନ କରୁଛନ୍ତି । ସରକାରୀ ଝଞ୍ଜାଳରୁ ମୁକ୍ତ ହେଲାପରେ ବିଶେଷତଃ ତାଙ୍କ ମସ୍ତକରୁ ଅଧ୍ୟକ୍ଷ ମୁକୁଟ ଓହ୍ଲାଇ ଯିବାପରେ ସେ ଅତ୍ୟନ୍ତ ଆନନ୍ଦିତ । ଶ୍ରୀଅରବିନ୍ଦଙ୍କ ଆଧ୍ୟାତ୍ମିକ ପ୍ରଭାବରେ ତାଙ୍କର ଶିଳ୍ପକଳା ମାନଉତ୍ତର ସାମର୍ଥ୍ୟ ଲାଭ କରିଛି । ୧୯୯୧ ମସିହାରେ ନୂଆଦିଲ୍ଲୀ ଠାରେ ଅନୁଷ୍ଠିତ Triennale (world) ପ୍ରଦର୍ଶନୀରେ ତାଙ୍କର ଛବି "ରଣାପ୍ରତାପ" ବହୁମୂଲ୍ୟରେ ବିକ୍ରୀ ହୋଇଛି । ୧୯୯୨ ରେ ନୂଆଦିଲ୍ଲୀଠାରେ ଅନୁଷ୍ଠିତ ଜାତୀୟ ଚିତ୍ରକଳା ପ୍ରଦର୍ଶନୀରେ ପ୍ରଦର୍ଶିତ ତାଙ୍କର ଛବି "The Red Table."

ଦିଲ୍ଲୀ ନ୍ୟାସ୍‌ନାଲ୍‌ ଆର୍ଟ ଗ୍ୟାଲେରୀ ପାଇଁ ବଚ୍ଛା ହୋଇପାଇଛି । ବିଶିଷ୍ଟ କଳାକାର ରୂପେ ସେ "ଓଡ଼ିଶା ଲଳିତକଳା ଏକାଡେମୀ ସମ୍ମାନ" ଲାଭ କରିଛନ୍ତି ।

ପ୍ରଜାତନ୍ତ୍ର ପ୍ରଚାର ସମିତି, ଗଞ୍ଜାମ ଚାରୁକଳା ପରିଷଦ, ଗଞ୍ଜାମ ଚିତ୍ରକଳା ଶିକ୍ଷକ ସଂଘ ଏବଂ ସାରଳା ଆୱାର୍ଡ କମିଟି ତାଙ୍କୁ ବିଶେଷ "ସମ୍ମାନ" ଅର୍ପଣ କରିଛନ୍ତି । ଭୁବନେଶ୍ୱର "Working Artist Association" ତାଙ୍କୁ 'କଳାବିଭୂଷଣ' ପଦବୀରେ ବିଭୂଷିତ କରିଛନ୍ତି ଏବଂ ୧୯୯୨ ମସିହାରେ ଶ୍ରେଷ୍ଠଶିଳ୍ପୀ ଭାବେ ସେ ଓଡ଼ିଶାର ରାଜ୍ୟପାଳ ପୁରସ୍କାର (କୋଣାର୍କ ଆୱାର୍ଡ଼) ଲାଭ କରିଛନ୍ତି ।

ଏତଦ୍‌ବ୍ୟତୀତ ସୂକ୍ଷ୍ମକଳା, ଶିଶୁଚିତ୍ର କଳା, ଗ୍ରାଫିକ୍‌ କଳା ଏବଂ ମନୁଷ୍ୟ ଇତିହାସର ପ୍ରଗତି ନିମନ୍ତେ କଳାର ଅବଦାନ ସମ୍ପର୍କରେ ତାଙ୍କର ଅନେକ ସନ୍ଦର୍ଭ ଉଚ୍ଚ ପ୍ରଶଂସିତ ହୋଇଛି ଏବଂ ଓଡ଼ିଶା ଲଳିତ କଳା ଏକାଡେମୀ ତାଙ୍କୁ ୧୯୮୦ ରୁ ୧୯୮୭ ପର୍ଯ୍ୟନ୍ତ ଉପସଭାପତି ରୂପେ ଦାୟିତ୍ୱ ବହନ କରିବାକୁ ସୁଯୋଗ ଦେଇ ସମ୍ମାନ ପ୍ରଦର୍ଶନ କରିଛି ।

ନିଜ ସମ୍ବନ୍ଧେ ସେ କହନ୍ତି—ପ୍ରତ୍ୟେକ ଶିଳ୍ପୀର ନିଜସ୍ୱ ଶୈଳୀ ରହିବା ଉଚିତ୍‌ । କଳା କେବେ ନକଲ୍‌ ବା ଅନୁକରଣ ନୁହେଁ । କଳର, କମ୍ପୋଜିସନ ଓ ଟେକ୍‌ନିକ ପ୍ରୟୋଗ କରି ନୂତନତା ସୃଷ୍ଟି କରିବା ହେଉଛି କଳା । ତେଣୁ ମୁଁ ଶାସ୍ତ୍ରୀୟକେତମାପୂ କଳାକୁ ପୁନରାବୃତ୍ତି ନ କରି ପ୍ରତୀକ ଧର୍ମୀ ଛବି ସୃଷ୍ଟି କଲି । ମୋ ସମସାମୟିକ ଅନେକ ଶିଳ୍ପୀ କେବଳ ସୁନ୍ଦର ମୁହଁଟିଏ ଆଙ୍କି ଜୀବନ କଟେଇ ଦେଇଛନ୍ତି । ନିଜ ଭିତରର ଭାବରାଜିକୁ ଆଧୁନିକ ଢଙ୍ଗରେ ଉପସ୍ଥାପନା କରିବା ମୋର ଲକ୍ଷ୍ୟ । ଏଥିପାଇଁ ମୋତେ ଅନେକ ସମାଲୋଚନା ସହ୍ୟ କରିବାକୁ ପଡ଼ିଛି । ଏପରିକି ମୋର ପୁରସ୍କୃତ ପ୍ରଥମ ଆଧୁନିକ ଶୈଳୀରେ ଛବି The Flight କୁ ପ୍ରଦର୍ଶନୀରେ ପ୍ରଦର୍ଶନ କରିବାକୁ ମନା କରିଦେଇଥିଲେ । ଛବିଟି ଟାଙ୍ଗିବା ପାଇଁ ମୋତେ କମ୍‌ ଯୁକ୍ତି ବାଢ଼ିବାକୁ ପଡ଼ିନାହିଁ ।

ଉତ୍କଳର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର କଳା ସମ୍ପର୍କରେ ସେ କହନ୍ତି—ସଂସ୍କୃତି ଓ ପରମ୍ପରା ଗୋଟିଏ ଜାତିକୁ ବଞ୍ଚାଇ ରଖେ । ଉତ୍କଳର

ପାରମ୍ପରିକ କଳା ଅତି ଉଚ୍ଚକୋଟୀର । ଆଦିବାସୀ କଳା, ପଟଚିତ୍ର, ତାଳପତ୍ର ଚିତ୍ର, କୋଣାର୍କ ଓ ଭୁବନେଶ୍ୱର ମନ୍ଦିର ଗାତ୍ରରେ ଉତ୍କୀର୍ଣ୍ଣ ଭାସ୍କର୍ଯ୍ୟ ତତ୍କାଳୀନ କଳାର ଶ୍ରେଷ୍ଠ ନିଦର୍ଶନ । ବର୍ତ୍ତମାନ ସର୍ବଭାରତୀୟ ତଥା ଆନ୍ତର୍ଜାତିକ କ୍ଷେତ୍ରରେ ଆମର ଅନେକ ଶିଳ୍ପୀ ସୁନାମ ଅର୍ଜନ କଲେଣି । ଏଣୁ ଉତ୍କଳ ଚିତ୍ରକଳାର ଭବିଷ୍ୟତ ଉଜ୍ଜ୍ୱଳମୟ ।

କଳାର ଭବିଷ୍ୟତ ସମ୍ପର୍କରେ ସେ କହନ୍ତି—ଯେହେତୁ "ଆତ୍ମା ହିଁ କଳାର ଉତ୍ସ, ତେଣୁ ଆଧ୍ୟାତ୍ମିକତାକୁ ଆଶ୍ରୟ କରି ଭବିଷ୍ୟତର କଳା ସୃଷ୍ଟିର ରହସ୍ୟକୁ ଅଧିକ ପ୍ରତୀକାତ୍ମକ କରି ପ୍ରକାଶ କରିବ । ଜଗତରେ ଯେଉଁ ହିଂସା, ଦ୍ୱେଷ, ଅବିଶ୍ୱାସ ଓ ସନ୍ଦେହର ମାତ୍ରା ଦିନକୁ ଦିନ ବୃଦ୍ଧି ଲାଭ କରୁଛି, ତାହା କେବଳ 'କଳା'ର ପ୍ରଭାବରେ ଦୂରୀଭୂତ ହେବ । ଆଗାମୀ ଯୁଗ ହେବ ଆଧ୍ୟାତ୍ମିକ ଯୁଗ । ତେଣୁ ଆଧ୍ୟାତ୍ମିକ ଯୁଗ ଗଠନରେ 'କଳା'ର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।



# ସବୁଜ ଯୁଗର ସାହିତ୍ୟିକ
# ଶ୍ରୀ ହରିଶ୍ଚନ୍ଦ୍ର ବରାଳ

**ଶ୍ରୀ ଅନ୍ନଦା ପ୍ରସାଦ ରକ୍ଷିତ୍**

## ଜନ୍ମ ଓ ଶୈଶବ :

୧୯୦୪ ସାଲ ଏପ୍ରିଲ ମାସ ତା ୧୨ ରିଖର ଏକ ନିସ୍ତବ୍ଧ ମଧ୍ୟାହ୍ନରେ ପୁତ୍ର ସନ୍ତାନ ଭାବେ ଜନନୀ ହୀରାମଣି ଦେବୀଙ୍କ ଗର୍ଭରେ ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବରାଳ ଜନ୍ମଲାଭ କରିଥିଲେ । ପ୍ରଥମ ଦୁଇଟି ସନ୍ତାନ ପୁତ୍ର ଓ କନ୍ୟା ଅକାଳରେ ନଷ୍ଟ ହୋଇ ଯାଇଥିଲେ । ତୃତୀୟ ସନ୍ତାନ କନ୍ୟା ନାରାୟଣୀର ବୟସ ଚାରି ପୂରିନଥିଲା । ତେଣୁ ଚତୁର୍ଥ ଗର୍ଭରେ ଏହି ପୁତ୍ର ସନ୍ତାନର ଆଗମନ ପରିବାରରେ ଆନନ୍ଦର ଢେଉ ଖେଳାଇ ଦେଇଥିଲା ।

ଏହି ପୁତ୍ର ସନ୍ତାନର ଜନ୍ମସ୍ଥାନ ବାଲେଶ୍ୱର ସହରର ବଟେଶ୍ୱର ଗ୍ରାମର ତନ୍ତୀସାହି । ଗ୍ରାମର ମୁଖ୍ୟ ଜ୍ୟୋତିଷୀ କୃତ୍ତିବାସ ନାୟକ ପାଞ୍ଜି-ପୋଥୀ ଧରି ତାଙ୍କ ଘରକୁ ଆସି ଭୂଇଁରେ ଖଡ଼ି ପକାଇ ଗଣନାକରି କହିଲେ, 'ସର୍ବମଙ୍ଗଳ' ।

କିଛିଦିନ ପରେ ଲେଖକ ସାହାଯ୍ୟରେ ତାଳପତ୍ରରେ ଲେଖି କୋଷ୍ଠୀ-ପତ୍ରଟିଏ ଆଣି ସେ ମା'ଙ୍କ ହାତରେ ଦେଇ କହିଲେ, ନବଜାତକର ନାମର ଆଦ୍ୟ ଅକ୍ଷର 'ହ' ହେବ । ତେଣୁ ଜାତକର ନାମ ରଖାଗଲା 'ହରିଶ୍ଚନ୍ଦ୍ର ।' ମାତାମହୀ ମାନାଦେଈ ମନସ୍ଥ କରିଥିଲେ ପୁଅ ଜନ୍ମହେଲେ ନାମ ରଖିବେ 'ବନବିହାରୀ' ଝିଅ ହେଲେ 'ରାଧିକା' । ହରି କିମ୍ବା ହରିଶ ନାଁ ଘରେ କାହାରି ତୁଣ୍ଡରୁ ଶୁଣାଯାଇନଥିଲା ।

ତେଣୁ ପିଲାଟିର ଡାକ ନାମ ରହିଲା, 'ବନ' । ହରେକୃଷ୍ଣଙ୍କର ପିତାଙ୍କ ନାମ କୃଷ୍ଣମୋହନ ବରାଳ । ପୂର୍ବପୁରୁଷମାନଙ୍କ ମଧ୍ୟରେ ଥିଲେ ପିତାମହ ଗଣେଶଚନ୍ଦ୍ର ଓ ପ୍ରପିତାମହ ନବକୁମାର । କୃଷ୍ଣ-ମୋହନ ଜାତିରେ ଥିଲେ ସୁବର୍ଣ୍ଣ ବଣିକ ମାତ୍ର ତାଙ୍କର ସୁନାରୁପାର କାରବାର ନଥିଲା । କୃଷ୍ଣମୋହନ ପ୍ରଥମ ଜୀବନରେ ବାରବାଟୀର 'କର' ପରିବାରରେ ଚାକିରି କରି କଲିକତା ସହ ନୌବାଣିଜ୍ୟରେ ସମ୍ପୃକ୍ତ ଥିଲେ । ତାଙ୍କର ହସ୍ତାକ୍ଷର ଖୁବ୍ ସୁନ୍ଦର ଥିଲା । ତେଣୁ ମୋତିଗଞ୍ଜ ବଜାରର ବସ୍ତ୍ର ବ୍ୟବସାୟୀଙ୍କ ଗଦିରେ ଖାତାର ହିସାବ ଲେଖୁଥିଲେ । ସେହି ଉପାର୍ଜନରୁ ସେ ଦୁଇମହଲା ମାଟିଘର ନିର୍ମାଣକରି ସ୍ୱଚ୍ଛଳଭାବେ ପରିବାର ପୋଷଣ କରୁଥିଲେ । କୃଷ୍ଣମୋହନଙ୍କ ଦେହର ବର୍ଣ୍ଣ ଥିଲା ଉଜ୍ଜ୍ୱଳ ଗୌରବର୍ଣ୍ଣ ଏବଂ ସେ ଥିଲେ ସ୍ୱାସ୍ଥ୍ୟବାନ ସୁପୁରୁଷ । ସେ ଜଣେ ପରୋପକାରୀ ଓ ଉଦାର ପ୍ରକୃତିର ମଣିଷ ଥିଲେ ।

ମାତ୍ର ପ୍ରଥମ ମହାସମର ଶେଷରେ ୧୯୧୯ ସାଲରେ 'ଓ୍ୱାର୍ ଇନଫ୍ଲୁଏନ୍‌ଜା' ନାମକ ରୋଗରେ ସେ ଅକାଳମୃତ୍ୟୁ ବରଣ କରିଥିଲେ ।

ମାତା ହୀରାମଣି ଦେବୀଙ୍କ ସ୍ୱଭାବ ଥିଲା ନମ୍ର ଓ ଦେବଦ୍ୱିଜଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଭକ୍ତି ଥିଲା । ଭିକାରୀ, ସାଧୁ ଓ ସନ୍ନ୍ୟାସୀଙ୍କୁ ଅକୃପଣ ହସ୍ତରେ ସେ ଭିକ୍ଷା ଓ ଖାଦ୍ୟ ସାମଗ୍ରୀ ଦାନ କରୁଥିଲେ । ଜନନୀଙ୍କର ଏହି ଭକ୍ତିଭାବ ହରେକୃଷ୍ଣଙ୍କ ମନରେ ସାରାଜୀବନ ପାଇଁ ଅଲିଭାଦାଗ ରଖିଯାଇଛି ଏବଂ ତାହା ତାଙ୍କର ଭବିଷ୍ୟତ ଜୀବନ ଓ ଚରିତ୍ର ଗଠନରେ ବିଶେଷ ପ୍ରଭାବ ପକାଇଛି ।

ବାଳକ ହରେକୃଷ୍ଣଙ୍କ ପିତାମାତା ବ୍ୟତୀତ ଘରେ ଆଉ କେହି ବୟୋଜ୍ୟେଷ୍ଠ ମୁରବିସ୍ଥାନୀୟ ବ୍ୟକ୍ତି ନଥିଲେ । ଗଣେଶଚନ୍ଦ୍ର ତାଙ୍କ ପିତା ନବକୁମାରଙ୍କର ଏକମାତ୍ର ସନ୍ତାନ ଥିଲେ । କୃଷ୍ଣମୋହନ ମଧ୍ୟ ଗଣେଶ-ଚନ୍ଦ୍ରଙ୍କ ଏକମାତ୍ର ସନ୍ତାନ । ନିକଟ ଆତ୍ମୀୟ କେହି ନଥିବାରୁ ବାଳକ ହରିକୃଷ୍ଣ ଯୌଥ ପରିବାରର ସ୍ୱାଦ ପାଇନଥିଲେ । ସେଥିପ୍ରତି ତାଙ୍କର ଆକର୍ଷଣ ମଧ୍ୟ ନଥିଲା । ମାତାମହ ବ୍ରଜସୁନ୍ଦର ଜଣେ ଦୀର୍ଘକାୟ ବଳବାନ ପୁରୁଷ ଥିଲେ । କୁସ୍ତି ଆଖଡ଼ାରେ ସେ ପହିଲମାନ ଆଖ୍ୟା ପାଇଥିଲେ ।

ବରଜ୍ ସର୍ଦ୍ଦାର ନାମରେ ସହରରେ ତାଙ୍କର ଖ୍ୟାତି ଥିଲା । ତାଙ୍କର ତିନିପୁଅ—ସୁନ୍ଦରମୋହନ, ଉମେଶଚନ୍ଦ୍ର ଓ ଫକୀରମୋହନ । ମା ହାସ୍ୟମଣି ମଝିରେ ମଝିରେ ଗୈାଳବଜାରରେ ଥିବା ବାପଘରକୁ ଯାଉଥିଲେ । ବାଳକ ହରିଶ୍ଚନ୍ଦ୍ରର ସ୍ୱଭାବ ଏପରି ଥିଲା ଯେ ସେ ମାମୁଁ ଘରେ ବେଶି ସମୟ ରହିପାରୁନଥିଲେ । ସେ ଘରକୁ ପଳାଇ ଆସୁଥିଲେ । ଏପରିକି ଯାତ୍ରା, ମେଳା, ଉତ୍ସବ ଆଦି ଦେଖିବାକୁ ସେ ମନକରୁଥିଲେ ।

ବାଲ୍ୟକାଳରେ ଖେଳ କୌତୂକରେ ହରିଶ୍ଚନ୍ଦ୍ରର ସାଥୀଙ୍କ ସଂଖ୍ୟା ମଧ୍ୟ ଅଳ୍ପ ଥିଲା । ସେମାନଙ୍କ ସଙ୍ଗେ ଗୁଡ଼ି ଉଡ଼ାଇବା ମାର୍ବଲ ଖେଳିବା, ଗୋଟି ଡାବଲ ଖେଳିବା ଓ ବାଗୁଡ଼ି ଖେଳରେ ସମୟ ଅତିବାହିତ କରୁଥିଲେ । ତାଙ୍କ ଖେଳର ସାଥୀମାନଙ୍କ ମଧ୍ୟରେ ଥିଲେ ଗୋପାଳ ମହାନ୍ତି, ମଦନ ବେହେରା, କଣେଶ ମାସନ୍ତ, ଶଶାକର ମାସନ୍ତ, ଭବତାରଣ ମୁଖାର୍ଜୀ, ଶିଖିଣ ଦେ ଓ ସନତ୍ ଦେ ।

ପିଲାଦିନେ ହରିଶ୍ଚନ୍ଦ୍ରଙ୍କର ବର୍ତ୍ତମାନଙ୍କୁ ଡ଼ରେ ଭୟ ଥିଲା । ସେ ସମୟରେ ସହରରେ ବାଘ ଉପଦ୍ରବ ମଧ୍ୟ ହରିଶ୍ଚନ୍ଦ୍ରଙ୍କୁ ଉଦ୍‌ବେଗିତ କରୁଥିଲା । ବାଲେଶ୍ୱର ତାଙ୍କ ଜୀବନର ଏକ ଅଲଗା ଅଧ୍ୟାୟ ହୋଇ ଏପର୍ଯ୍ୟନ୍ତ ଉଜ୍ଜୀବିତ ଅଛି । ଏହାର କଉଡ଼ି ଶାଳ, ରୋଇତର ପ୍ରଥମ 'କଟଆର' (ଜଳରେ ଜାହାଜର ପ୍ରଥମ ଶୁଭଯାତ୍ରା) ଆଦି ହରିଶ୍ଚନ୍ଦ୍ରଙ୍କୁ ବାଲ୍ୟକାଳରେ ମନ୍ତ୍ରମୁଗ୍ଧ କରି ରଖିଥିଲା ।

**ଚାନ୍ଦିପୁରରେ ସୂର୍ଯ୍ୟୋଦୟ**—ଚାନ୍ଦିପୁରଠାରେ ସମୁଦ୍ରରେ ସୂର୍ଯ୍ୟୋଦୟ ଓ ସମୁଦ୍ର ସ୍ନାନ ବାଳକ ହରିଶ୍ଚନ୍ଦ୍ରର ଏକ ବିଶେଷ ଆକର୍ଷଣ ଥିଲା । ଭୋର ଘଣ୍ଟାରେ ଘରୁ ବାହାରି ସାଙ୍ଗମାନଙ୍କ ସହ ଧାଇଁ ଧାଇଁ ସୂର୍ଯ୍ୟୋଦୟ ପୂର୍ବରୁ ସେ ଚାନ୍ଦିପୁରରେ ପହଞ୍ଚି ସୂର୍ଯ୍ୟୋଦୟ ଦେଖୁଥିଲେ ।

ଇଂରେଜ ଅମଳ ପୂର୍ବରୁ ଏ ଦେଶରେ ବୃକ୍ଷଲତାରୁ ସଂଗୃହୀତ ଔଷଧର ବିଶେଷ ପ୍ରଚଳନ ଥିଲା । ବନଜାତ ଔଷଧି, ଜୁଡ଼ୁକା, ଗୁଣିଆର ଝାଡ଼ଫୁଙ୍କରେ ଲୋକେ ବିଶ୍ୱାସ ଓ ନିର୍ଭର କରୁଥିଲେ । ଗୁଣିଆର ଝାଡ଼ଫୁଙ୍କ ଓ ମନ୍ତ୍ରଶକ୍ତିର ପ୍ରଭାବ ହରିଶ୍ଚନ୍ଦ୍ର ବାଲ୍ୟକାଳରେ ବହୁବାର ପ୍ରତ୍ୟକ୍ଷ କରିଥିଲେ ।

ବଟେଶ୍ୱର ହରିଜନ ବସ୍ତିର ହାଡ଼ ସାନ୍ଧେଲ ଜମ୍ବୁ ଗୁଣିଆର ଘର । ଏକ ଗ୍ରାମ୍ୟ ମହିଳାର ଡ଼ାହାଣୀ ଦୃଷ୍ଟିରେ ପଡ଼ି ହରିଶ୍ଚନ୍ଦ୍ରଙ୍କର ଜଣେ ଆତ୍ମୀୟା ହଠାତ୍ ପୀଡ଼ିତ ହୋଇଥିଲେ । ଝିଅଟି ଅଳ୍ପ ବୟସ୍କା ଓ ଅନ୍ତ ସ୍ୱଦଶା । ଏହି ଆକସ୍ମିକ ପୀଡ଼ାରେ ହରିଶ୍ଚନ୍ଦ୍ରଙ୍କ ପିତାମାତା ଉଦ୍‌ବିଗ୍ନ ହୋଇ ଜମ୍ବୁ ଗୁଣିଆକୁ ଖବର ଦେଲେ । ଜମ୍ବୁ ଗୁଣିଆ ଝାଡ଼ ଓ ଫୁଙ୍କ ଦ୍ୱାରା ଝିଅଟିକୁ ଆରୋଗ୍ୟ କରିଥିଲେ । ତାହାନ୍ତରା ହରିଶ୍ଚନ୍ଦ୍ର ଷଠରଗ ବର୍ଷ ବୟସରେ ନିଜ ଜଙ୍ଘରେ ଦାରୁଣ ଯନ୍ତ୍ରଣା ଭୋଗୁଥିଲେ । ଇରଗା ପାଛରନ୍ ଇଞ୍ଜେକ୍‌ସନ ଦ୍ୱାରା ଆରୋଗ୍ୟ ନ ହେବାରୁ ସେ ଜମ୍ବୁ ଗୁଣିଆର ଶରଣାପନ୍ନ ହୋଇଥିଲେ । ଜମ୍ବୁ ହାଡ଼ିର ଅବ୍ୟର୍ଥ ଝାଡ଼ଫୁଙ୍କ ଦ୍ୱାରା ହରିଶ୍ଚନ୍ଦ୍ର ଆରୋଗ୍ୟ ଲାଭ କରିଥିଲେ ।

**ଶିକ୍ଷା**—୧୯୦୯ରେ ଏକ ଶୁଭଦିନ ଦେଖି ଜ୍ୟୋତିଷୀ କୃତ୍ତିବାସ ମା ଏକ ବାଳକ ହରିଶ୍ଚନ୍ଦ୍ରକୁ ଖଡ଼ିଛୁଆଁଇ ଶିକ୍ଷାର ଶୁଭାରମ୍ଭ କରିଥିଲେ । ଯାଜପୁର ନିବାସୀ ଜଣେ ଅବଧାନ ବଟେଶ୍ୱରର ଅର୍ଜୁନ ପଣ୍ଡାଙ୍କ ଘରେ ଚାଟଶାଳୀ ବସାଇଥିଲେ । ସେ କାଳିଆ ଅବଧାନ ନାମରେ ପରିଚିତ ଥିଲେ ଏବଂ ଚାଟମାନଙ୍କୁ ନିର୍ଦ୍ଦୟ ବେତାଘାତ କରୁଥିଲେ । ସେହି କାଳିଆ ଅବଧାନଙ୍କ ଚାଟଶାଳୀରେ ହରିଶ୍ଚନ୍ଦ୍ର ପାଠ ପଢ଼ିଥିଲେ ।

ପ୍ରାୟ ଦୁଇବର୍ଷ ପରେ ହରିଶ୍ଚନ୍ଦ୍ର ତାଙ୍କ ବଡ଼ଭଉଣୀ ନାରାୟଣୀଙ୍କ ସଙ୍ଗେ ବାଳିକା ସ୍କୁଲରେ ପାଠ ପଢ଼ିଥିଲେ । ବାଳିକା ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ପୁରୁଣା ବାଲେଶ୍ୱର ନିବାସୀ ହରେକୃଷ୍ଣ ଦାଶ । ଏହାପରେ ଜିଲ୍ଲା ସ୍କୁଲ ପାଖ ଗୁଣ୍ଡପୋଖରୀ ନିକଟରେ ଥିବା ନର୍ମାଲ ଟ୍ରେନିଂ ସ୍କୁଲରେ ହରିଶ୍ଚନ୍ଦ୍ର ଦୁଇବର୍ଷ ପାଠ ପଢ଼ିଥିଲେ । ହେଡ଼ପଣ୍ଡିତ ଥିଲେ କାବ୍ୟତୀର୍ଥ ପଣ୍ଡିତ କୁଳମଣି ମିଶ୍ର । ନର୍ମାଲ ଟ୍ରେନିଂ ସ୍କୁଲରୁ ନିମ୍ନପ୍ରାଥମିକ ବୃତ୍ତିଲାଭ କରି ହରିଶ୍ଚନ୍ଦ୍ର ୧୯୧୩ରେ ବାରବାଟୀରେ ଥିବା ଭିକ୍ଟୋରିଆ ଜୁବିଲି ଏମ୍.ଇ ସ୍କୁଲରେ ପ୍ରବେଶ କଲେ । ଏମ୍.ଇ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ କୃଷ୍ଣପ୍ରସାଦ ଦଣ୍ଡପାଟ ମହାଶୟ । ଉତ୍ତମ ପାଠପଢ଼ା ଓ ଛାତ୍ରମାନଙ୍କର ଶୃଙ୍ଖଳା ଜ୍ଞାନ ଉପରେ ଦଣ୍ଡପାଟ ମହାଶୟ ବିଶେଷ ଜୋର ଦେଉଥିଲେ ।

ବଟେଶ୍ବରର ନିବାସୀ ରାଧାଗୋବିନ୍ଦ ଗୁପ୍ତ ଇଂରାଜୀ ଓ ଭୂଗୋଳ ପଢ଼ାଉଥିଲେ । ଓଡ଼ିଆ ସାହିତ୍ୟ ପଢ଼ାଉଥିଲେ ପୁରୀର ପଣ୍ଡିତ ସଦାଶିବ ମିଶ୍ର । ସୁନହଟ ନିବାସୀ ହରେକୃଷ୍ଣ ମାଷ୍ଟର ଅଙ୍କ ପଢ଼ାଉଥିଲେ ।

**ଐତିହାସିକ ଘଟଣା**—ହରେକୃଷ୍ଣ ଜୁବିଲି ସ୍କୁଲରେ ପଢୁଥିବା ସମୟରେ ବାଲେଶ୍ବରରେ ଏକ ଅସାଧାରଣ ଐତିହାସିକ ଘଟଣା ଘଟିଥିଲା । ଦିନେ ମଧ୍ୟାହ୍ନ ପୂର୍ବରୁ ହେଡ୍‌ମାଷ୍ଟର ଦଣ୍ଡପାଟ ମହୋଦୟ ସବୁ ଛାତ୍ରଙ୍କୁ ଏକାଠି କରି ସ୍କୁଲ ଛୁଟି କରିଦେଇ ସମସ୍ତଙ୍କୁ ସତର୍କ କରାଇ କହିଲେ, 'ସ୍କୁଲ ଛୁଟି ହେଲା । ପିଲେ, ତୁମ୍ଭେମାନେ ସମସ୍ତେ ଏକମୁହାଁ ହୋଇ ନିଜ ନିଜ ଘରକୁ ଚାଲିଯାଅ, ବାଟରେ ଏଣେ ତେଣେ ବୁଲିବ ନାହିଁ ।' ହେଡ୍‌ମାଷ୍ଟରଙ୍କ ଏପରି ଅସ୍ୱାଭାବିକ ଓ ଅଦ୍ଭୁତ ନିର୍ଦ୍ଦେଶରେ ଛାତ୍ରମାନେ ଖୁବ ଚକିତ ଅବସ୍ଥାରେ ନିଜର ବହିପତ୍ର ଧରି ସ୍କୁଲରୁ ବାହାରି ଆସିଲେ । ବାଟରେ ସେମାନେ ଲୋକମୁଖରୁ ଶୁଣିଲେ ଯେ ପୁଲିସ୍ ଫୌଜ ସଙ୍ଗେ ଯୁଦ୍ଧକରି ସ୍ୱଦେଶୀ ଆନ୍ଦୋଳନର ଜଣେ ନେତା, 'ବାଘାଯତୀନ'ଙ୍କୁ ଗୁରୁତର ଆହତ ଅବସ୍ଥାରେ ସ୍କୁଲ ପାଖ ରାଜା ବୈକୁଣ୍ଠନାଥ ଦେ'ଙ୍କ ସରକାରୀ ହାସପାତାଳକୁ ଚିକିତ୍ସା ପାଇଁ ଅଣାଯିବ । ସ୍ୱଦେଶୀ ଆନ୍ଦୋଳନର ସେହି ଯୁବକମାନଙ୍କୁ ଆଖିରେ ଦେଖିବାକୁ ହରେକୃଷ୍ଣଙ୍କ ମନରେ ପ୍ରବଳ ଆଗ୍ରହ ଥିଲା । କିନ୍ତୁ ହେଡ୍‌ମାଷ୍ଟରଙ୍କ ନିର୍ଦ୍ଦେଶ ଯୋଗୁଁ ହରେକୃଷ୍ଣ ସେ ସୁଯୋଗ ପାଇ ନ ଥିଲେ ।

ହରେକୃଷ୍ଣ ଥିଲେ ଜଣେ ମେଧାବୀ ଛାତ୍ର, ସେ ଉଚ୍ଚ ପ୍ରାଥମିକ ବୃତ୍ତି ପରୀକ୍ଷାରେ ବାଲେଶ୍ବର ଜିଲ୍ଲାରେ ପ୍ରଥମ ସ୍ଥାନ ଅଧିକାର କରି ବୃତ୍ତିଲାଭ କରିଥିଲେ ।

ଜୁବିଲି ସ୍କୁଲରୁ ଏମ.ଇ ପରୀକ୍ଷାରେ ସଫଳତାର ସହିତ ଉତ୍ତୀର୍ଣ୍ଣ ହୋଇ ୧୯୧୬ରେ ସେ ବାଲେଶ୍ବର ଜିଲ୍ଲା ସ୍କୁଲର ଚତୁର୍ଥ ଶ୍ରେଣୀରେ ନାମ ଲେଖାଇଥିଲେ । (ଆଜିକାଲିର ଅଷ୍ଟମ ଶ୍ରେଣୀକୁ ସେ ସମୟରେ ଚତୁର୍ଥଶ୍ରେଣୀ ବା Fourth Class ଓ ପରବର୍ତ୍ତୀ ଶ୍ରେଣୀକୁ ଯଥାକ୍ରମେ 3rd, 2nd & 1st. Class କୁହାଯାଉଥିଲା) ସେ ସମୟରେ ବାଲେଶ୍ବର ଜିଲ୍ଲା ସ୍କୁଲର ହେଡ୍‌ମାଷ୍ଟର ଥିଲେ ବାବୁ ଉପେନ୍ଦ୍ର ନାରାୟଣ ଦତ୍ତଗୁପ୍ତ, ହେଡ୍‌ପଣ୍ଡିତ

ଥିଲେ ପୂର୍ବର ଲୋକନାଥ ମହାପାତ୍ର ଏବଂ ଅନନ୍ତ ମିଶ୍ର ଥିଲେ ସେକେଣ୍ଡ ପଣ୍ଡିତ ।

ଅନ୍ୟ ଶିକ୍ଷକ ମଧ୍ୟରୁ ଶ୍ୟାମ ସୁନ୍ଦର ଗଣିତ ଶିକ୍ଷା ଦେଉଥିଲେ । ୧ମ ଓ ୨ୟ (ଏକାଦଶ ଓ ଦଶମ) ଶ୍ରେଣୀରେ ଇଂରାଜୀ ପଢ଼ାଇବା ପାଇଁ ଦେବେନ ମିତ୍ର ନାମରେ ଜଣେ ଶିକ୍ଷକ କଲିକତାରୁ କଟକ ପାଇଁ ଆସିଥିଲେ । ବୈଦ୍ୟନାଥ ମହାନ୍ତି ହାଇସ୍କୁଲର ସୁପରିଣ୍ଟେଣ୍ଡେଣ୍ଟ ଥିଲେ ଏବଂ ସେ ଭୂଗୋଳ ପଢ଼ାଉଥିଲେ । ହରେକୃଷ୍ଣ ପ୍ରତିବର୍ଷ କ୍ଳାସରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହେଉଥିଲେ ।

ପୂର୍ବେ କୁହାଯାଇଛି—ଯୁଦ୍ଧୋତ୍ତର ଇନ୍‌ଫ୍ଲୁଏନ୍‌ଜା ମହାମାରୀ ରୋଗରେ ୧୯୧୯ର ପ୍ରାରମ୍ଭରେ ପିତା କୃଷ୍ଣମୋହନଙ୍କ ଅକାଳ ବିୟୋଗ ହୋଇଥିଲା । ପରିବାରର ସମସ୍ତେ ଜଣା ଅଧିକ ସେହି ରୋଗରେ ପୀଡ଼ିତ ହୋଇଥିଲେ । ପରେ ପରେ ହରେକୃଷ୍ଣ ନିଜେ ପ୍ଲୀହା ରୋଗ ଭୋଗିଲେ । ପ୍ରାୟ ତିନିବର୍ଷ ମେଲେରିଆରେ ଆକ୍ରାନ୍ତ ହୋଇ ସେ ଅତ୍ୟନ୍ତ ଦୁର୍ବଳ ଓ ରୁଗ୍‌ଣ ହୋଇ ପଡ଼ିଥିଲେ; ଏପରିକି ତାଙ୍କର ଜୀବନର ଆଶଙ୍କା ଦେଖା ଦେଇଥିଲା ।

ଗୃହସ୍ଥ ହିସାବରେ କୃଷ୍ଣମୋହନ ମୁକ୍ତହସ୍ତରେ ବ୍ୟୟ କରୁଥିଲେ । 'ଯେତ ଆୟ ତେତ ବ୍ୟୟ' ଥିଲା ତାଙ୍କର ନୀତି । ତାଙ୍କ ମୃତ୍ୟୁର କିଛିବର୍ଷ ପୂର୍ବେ ଚୋରମାନେ ଘର ଭାଙ୍ଗି ସର୍ବସ୍ୱ ଲୁଟି ନେଇଥିବାରୁ ଘରେ ଅଳଙ୍କାର କମ୍ବା ମୂଲ୍ୟବାନ ଜିନିଷ ବିଶେଷ କିଛି ନଥିଲା । ଏଣୁ ତାଙ୍କ ମୃତ୍ୟୁ ପରେ ଦେଖାଗଲା, ତାଙ୍କ ହାତବାକ୍‌ସରେ ଅଳ୍ପକିଛି ଟଙ୍କା ଛଡ଼ା ଆଉ କିଛି ନାହିଁ । ଏହି ପରିସ୍ଥିତିରେ ହରେକୃଷ୍ଣଙ୍କ ପରିବାର ଦାରୁଣ ଆର୍ଥିକ ଅନାଟନର ସମ୍ମୁଖୀନ ହୋଇଥିଲେ । ଏପରିକି ନିଜକୁ ଓଳିଏ ଅନ୍ନସଂସ୍ଥାନ କରିବା କଠିନ ହେଲା । ଘରେ ଯାହା କଂସା ପିତଳ ବାସନ, ଏବଂ ମା'ଙ୍କ ଦେହରେ ଯାହା କିଛି ସୁନାରୁପାର ଅଳଙ୍କାର ଅବଶିଷ୍ଟ ଥିଲା ତାକୁ ବିକିଭାଙ୍ଗି ଖାଇବାକୁ ପଡ଼ିଥିଲା । ଘର ଚଳାଇବା ପାଇଁ ବାଳକ ହରେକୃଷ୍ଣଙ୍କୁ ଏହି ସମୟରେ କଠିନ ଶ୍ରମ ସ୍ୱୀକାର କରିବାକୁ ପଡ଼ିଲା । ସହରର ବାଗ୍‌ବୃନ୍ଦାବନ ପୋଖରୀ ନିକଟରେ କାଠ ଗୋଦାମରୁ କାଠ କିଣି, ନିଜେ କାନ୍ଧରେ ବୋହି କାଠକୁ ଫାଳକରି ଘର ପାହି ପାହି ବୁଲି

ସେହି ଜାଣେଣି  ତାଠକୁ ବନୟ କର ସେ  ପରେବାରର  ଗୁଜରାଣ ମେଣ୍ଟାଇ ଥିଲେ । ସେଉଁ ସ୍ୱର୍ଣ୍ଣ ପଦକଟିକୁ ହରିଶ୍ଚନ୍ଦ୍ର ବାଲ୍ୟକାଳରେ ପାଠ ପାଇଁ ପୁରସ୍କାର ପାଇଥିଲେ, ଶୋଚମାୟ ଆର୍ଥିକ ଦୁରବସ୍ଥାର ସମ୍ମୁଖୀନ ହୋଇ ଦିନେ ସେହି ସ୍ୱର୍ଣ୍ଣ ପଦକଟିକୁ ମାତ୍ର ପାଞ୍ଚ ଟଙ୍କାରେ ବଣିଆ ପାଖରେ ବିକ୍ରୟ କରିବାକୁ ପଡ଼ିଲା ।

ମେଧାବୀ ଛାତ୍ର ହିସାବରେ  ହରିଚନ୍ଦ୍ର ବୃତ୍ତି  ପାଉଥିଲେ ମଧ୍ୟ ତାଙ୍କର ଭବିଷ୍ୟତ ଶିକ୍ଷାଲାଭ ବନ୍ଦ ହୋଇଯିବାର ଆଶଙ୍କା ଦେଖାଦେଲା । ଏହି ଦାରୁଣ ଦୁରବସ୍ଥାରେ ଦୈବପ୍ରେରିତ ଆଶୀର୍ବାଦ ଭଳି ଦିନେ ସକାଳେ ଜଣେ ବୟସ୍କ ଭଦ୍ରବ୍ୟକ୍ତି ତାଙ୍କ ଘରେ  ଆସି ଉପସ୍ଥିତ ହୋଇଥିଲେ । ସେ ମାଆଙ୍କଠାରୁ  ପୁଅର ପାଠଶାଠ ବିଷୟ ପଚାରି ବୁଝିଲେ । ସେହି ସଦାଶୟ ଭଦ୍ରବ୍ୟକ୍ତି ଥିଲେ ଭୋଳାନାଥ  ଦତ୍ତ । ସେ ଶିକ୍ଷା ବିଭାଗର ଏସ୍. ଆଇ. ଚାକିରିରୁ ଅବସର ନେଇ ସହରରୁ ଘରକୁ ଫେରିଥିଲେ । ସେ ନିଜେ ଜାତିରେ ଥିଲେ ସୁବର୍ଣ୍ଣ ବଣିକ । ଏଣୁ ନିଜ ସମ୍ପ୍ରଦାୟରେ କୌଣସି ପିଲା ଭଲ ପାଠ ପଢୁଥିଲେ  ତାହାର ଅନୁସନ୍ଧାନ କରିବାକୁ ସେ ଆସିଥିଲେ ।

ମା'ଙ୍କଠାରୁ ହରିଶ୍ଚନ୍ଦ୍ରର ସବୁ  ଖବର ପାଇ ହରିଶ୍ଚନ୍ଦ୍ରକୁ ସାଙ୍ଗରେ ନେଇ ଜିଲ୍ଲା ସ୍କୁଲ ହେଡ଼ମାଷ୍ଟର  ଉପେନ୍ଦ୍ର ନାରାୟଣ  ଦତ୍ତଗୁପ୍ତଙ୍କୁ ଭେଟି-ଥିଲେ । ତାଙ୍କୁ ହରିଶ୍ଚନ୍ଦ୍ରଙ୍କର ପାଠ  ବିଷୟ  ପଚାରିବାରୁ ମିତଭାଷୀ ହେଡ଼ମାଷ୍ଟର ସଂକ୍ଷେପରେ କହିଥିଲେ ଯେ ପିଲାଟି ଜୀବନରେ ବଞ୍ଚିଲେ ହେଲା । ପରେ ହରିଶ୍ଚନ୍ଦ୍ରର ଜଟିଳ ପ୍ଲୀହା କଥା ଉଲ୍ଲେଖ କରି ସ୍ୱତଃପ୍ରବୃତ୍ତ ହୋଇ ସହରର ଜଣେ  ପ୍ରାଇଭେଟ୍ ଡାକ୍ତର  ବିନୋଦ ବର୍ଦ୍ଧନଙ୍କୁ ଛାତ୍ର ହରିଶ୍ଚନ୍ଦ୍ରକୁ ଦାତବ୍ୟରେ ଔଷଧ ଦେବାକୁ ଚିଠି  ଲେଖିଦେଲେ । ଦୁଇବର୍ଷ କାଳ ବିନୋଦବାବୁ ପ୍ଲୀହା ଓ ମେଲେରିଆ ପାଇଁ ଔଷଧ ଦେଇ ଚିକିତ୍ସା କରିବାରୁ  ହରିଶ୍ଚନ୍ଦ୍ରଙ୍କ  ସ୍ୱାସ୍ଥ୍ୟର ଉନ୍ନତି ହେଲା ଏବଂ ସେ ପୂର୍ବପରି ପାଠ ପଢ଼ିବାକୁ ସକ୍ଷମ ହେଲେ ।

ଏହା ପରେ ଉପେନ୍ଦ୍ରବାବୁ ବଦଳି ହୋଇଗଲେ ଏବଂ ଚନ୍ଦ୍ର-ମୋହନ ମହାରଣା ଜିଲ୍ଲା ସ୍କୁଲର  ହେଡ଼ମାଷ୍ଟର ହୋଇ  ଆସିଲେ । ସେତେବେଳେ ହରିଶ୍ଚନ୍ଦ୍ର ସେକେଣ୍ଡ କ୍ଲାସ୍‌ର ଛାତ୍ର । ଅତିରିକ୍ତ ବିଷୟ

ସ୍ୱଭାବରେ ସଂସ୍କୃତ ନ ନେଇ ହରିଶ୍ଚନ୍ଦ୍ର ଗଣିତ ନେଇଥିଲେ । ବିଖ୍ୟାତ ପଣ୍ଡିତ ଅନନ୍ତ ମିଶ୍ର ଚାହୁଁଥିଲେ, ହରିଶ୍ଚନ୍ଦ୍ର ଭଳି ମେଧାବୀ ଛାତ୍ର ସଂସ୍କୃତ ଅଧ୍ୟୟନାର୍ଥ ନେଉ । ଦିନେ ସେ କବିଶ୍ରେଷ୍ଠ କାଳିଦାସଙ୍କ କାବ୍ୟ ପ୍ରତିଭା ବିଷୟରେ ବୁଝାଇ ହରିଶ୍ଚନ୍ଦ୍ରଙ୍କୁ ସଂସ୍କୃତକୁ ଅତିରିକ୍ତ ବିଷୟ ରୂପେ ନେବାକୁ ପ୍ରବର୍ତ୍ତାଇଲେ । ସଂସ୍କୃତ ଅନ୍ୟତମ ପ୍ରିୟ ବିଷୟ ହେଲେ ମଧ୍ୟ ପରୀକ୍ଷାରେ ଗଣିତରେ ବେଶି ନମ୍ବର ପାଇବା ଆଶାରେ ହରିଶ୍ଚନ୍ଦ୍ର ଗଣିତକୁ ନିର୍ବାଚନ କରିଛନ୍ତି ବୋଲି କହିଥିଲେ । ହରିଶ୍ଚନ୍ଦ୍ରଙ୍କ କଥାକୁ ପରୀକ୍ଷା କରିବାକୁ ପଣ୍ଡିତେ କହିଥିଲେ, ସଂସ୍କୃତ ତୋ'ର ଅନ୍ୟଏକ ପ୍ରିୟ ବିଷୟ ବୋଲି କହୁଛୁ । କୁମାର ସମ୍ଭବ କାବ୍ୟର ଏହି ସାତ ସର୍ଗକୁ ସପ୍ତାହକ ମଧ୍ୟରେ ମୁଖସ୍ଥ କରିଦେଇ ପାରିଲେ ମୁଁ ଜାଣିବି ଯେ ତୋ' କଥା ସତ ଏବଂ ମୁଁ ତୋତେ ଦଶଟଙ୍କା ପୁରସ୍କାର ଦେବି ।

ପରବର୍ତ୍ତୀ ସପ୍ତାହରେ କୁମାର ସମ୍ଭବର ସେହି ସାତଟି ସର୍ଗକୁ ହରିଶ୍ଚନ୍ଦ୍ର କଣ୍ଠସ୍ଥ କରି ନିର୍ଭୁଲ ଭାବେ ଆବୃତ୍ତି କରିବାରୁ ସେକେଣ୍ଡ ପଣ୍ଡିତ ଅନନ୍ତ ମିଶ୍ର ମହୋଦୟ ମୁଗ୍ଧ ହୋଇ ହରିଶ୍ଚନ୍ଦ୍ରଙ୍କୁ ପୁରସ୍କାର ଦେଇଥିଲେ ।

ମେଟ୍ରିକ୍ୟୁଲେସନ୍ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ବିହାର-ଓଡ଼ିଶାର ପାଟନା ବିଶ୍ୱବିଦ୍ୟାଳୟରେ ହରିଶ୍ଚନ୍ଦ୍ର ତୃତୀୟ ସ୍ଥାନ ଅଧିକାର କରି ମାସିକ କୋଡ଼ିଏ ଟଙ୍କା ବୃତ୍ତି ପାଇଲେ । ଅଧିକନ୍ତୁ ଗଣିତରେ ପୂରା ଶହେ ନମ୍ବର ପାଇଥିବାରୁ ସ୍ୱର୍ଣ୍ଣପଦକ ପୁରସ୍କାର ପାଇଥିଲେ ।

ହରିଶ୍ଚନ୍ଦ୍ର ମେଟ୍ରିକ୍ ପରୀକ୍ଷାରେ ବୃତ୍ତିଲାଭ କରିଥିଲେ ମଧ୍ୟ କଟକକୁ ଯାଇ ରେଭେନ୍ସା କଲେଜରେ ପାଠପଢ଼ି ପାରିବେ କି ନାହିଁ ସଂଶୟ ଜାତହେଲା । ଅଭିଭାବକ ସ୍ୱାମୀୟ ସଦାଶୟ ଭୋଳାନାଥବାବୁ ବ୍ୟସ୍ତ ହୋଇ ଚାହିଁଥିଲେ ଯେ ହରିଶ୍ଚନ୍ଦ୍ର ଉଚ୍ଚଶିକ୍ଷା ଲାଭରୁ ବଞ୍ଚିତ ନହେଉ । ସେଥିପାଇଁ ସେ ହରିଶ୍ଚନ୍ଦ୍ରଙ୍କୁ ସଙ୍ଗରେ ନେଇ ସହରର ବିଶିଷ୍ଟ ଧନୀ ବ୍ୟକ୍ତିମାନଙ୍କ ସଙ୍ଗେ ପରିଚୟ କରାଇ ଦେଇଥିଲେ । ଜମିଦାର କୁମାର ମନ୍ମଥନାଥ ଦେ, ବିଶିଷ୍ଟ ଓକିଲ ଗୁରୁଚନ୍ଦ୍ର ରାୟ ଓ ମୁକୁନ୍ଦ ଦାସ ପ୍ରଭୃତି ବଦାନ୍ୟ ବ୍ୟକ୍ତିଙ୍କଠାରୁ ଅର୍ଥ ସାହାଯ୍ୟର ପ୍ରତିଶ୍ରୁତି ପାଇବାରୁ ତାଙ୍କର ଉଚ୍ଚଶିକ୍ଷା ସମ୍ଭବ ହେଲା ।

ଭୋଳାନାଥବାବୁଙ୍କ ସାନପୁଅ ପ୍ରତାପ ଦତ୍ତ କଟକର ସ୍ୱଧର୍ମ-ଚୌକ ଥାନା ଦାୟିତ୍ୱରେ ଥିଲେ । ଭୋଳାନାଥବାବୁ ସଙ୍ଗରେ ହରିଶ୍ଚନ୍ଦ୍ରଙ୍କୁ ଘେନଯାଇ ତାଙ୍କ ସାନପୁଅଙ୍କ ବସାରେ ସପ୍ତାହେ ରହି ୧୯୨୧ରେ ଜୁଲାଇ ମାସରେ ରେଭେନ୍‌ସା କଲେଜରେ ହରିଶ୍ଚନ୍ଦ୍ରଙ୍କ ନାମ ଲେଖାଇ ଦେଲେ । ସେହି ସମୟରେ ସେ କଟକର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସହ ହରିଶ୍ଚନ୍ଦ୍ରଙ୍କର ପରିଚୟ କରାଇ ତାଙ୍କର ଆର୍ଥିକ ସହାୟତାର ପଥ ସୁଗମ କରାଇଥିଲେ । ସେମାନଙ୍କ ମଧ୍ୟରେ ନେତାଜୀ ସୁଭାଷଙ୍କ ପିତା ଜାନକୀନାଥ ବୋଷ, ଓଡ଼ିଆ କଥା ସାହିତ୍ୟର ଜନ୍ମଦାତା ଫକୀରମୋହନଙ୍କ ପୁତ୍ର ଦର୍ଶନ ବିଭାଗର ଅଧ୍ୟାପକ ମୋହିନୀ ମୋହନ ସେନାପତି, ଅର୍ଥନୀତିର ଅଧ୍ୟାପକ ସୁରେଶ ଚନ୍ଦ୍ର ବର୍ଦ୍ଧନ ଓ ଓଡ଼ିଆ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ ପ୍ରଭୃତି ପ୍ରଧାନ ଥିଲେ ।

ରେଭେନ୍‌ସା କଲେଜର ପ୍ରିନ୍‌ସିପାଲ ମିଃ ଏଚ୍. ଲମ୍ବାର୍ଟଙ୍କ ସହ ଯୁବକ ହରିଶ୍ଚନ୍ଦ୍ରଙ୍କର ପରିଚୟ କରାଇ ଦେଇ ଭୋଳାନାଥବାବୁ ତାଙ୍କର ଦୂରଦର୍ଶିତାର ପରିଚୟ ଦେଇଥିଲେ । ସେହି ପ୍ରଥମ ପରିଚୟ ଦିନରୁ ଲମ୍ବାର୍ଟ ସାହେବ ହରିଶ୍ଚନ୍ଦ୍ରଙ୍କ ପ୍ରତି ଅନୁକୂଳ ମନୋଭାବ ବହୁକାଳ ପୋଷଣ କରିଥିଲେ । ଲମ୍ବାର୍ଟ ସାହେବଙ୍କ ସାମୟିକ ଅର୍ଥ ସାହାଯ୍ୟ ହରିଶ୍ଚନ୍ଦ୍ର ଆଜି ମଧ୍ୟ ଗଭୀର କୃତଜ୍ଞତାର ସହିତ ସ୍ମରଣ କରିଥାନ୍ତି । ପରେ ସେ ବି. ଏସ୍.ସି. ପାଶ୍ କରି ପାଟନାରେ ଏମ୍ ଏସ୍.ସି. ପଢ଼ିବାକୁ ଗଲାବେଳେ ଲମ୍ବାର୍ଟ ସାହେବ ସଦୟ ହୋଇ ପାଟନାର ରସାୟନ ବିଭାଗର ଅଧ୍ୟକ୍ଷ ଡଃ ଏସ୍. ସି. କୋଲଡ଼ୱେଲଙ୍କ ପାଖକୁ ପରିଚୟପତ୍ର ଦେଇ ହରିଶ୍ଚନ୍ଦ୍ରଙ୍କୁ ମିଣ୍ଟୋ ହଷ୍ଟେଲରେ ରଖିବାକୁ ଅନୁରୋଧ କରିଥିଲେ । ମିଣ୍ଟୋ ହଷ୍ଟେଲରେ ସ୍ଥାନ ନ ଥିବାରୁ କୋଲ୍‌ଡ଼ୱେଲ ସାହେବ ହରିଶ୍ଚନ୍ଦ୍ରଙ୍କୁ ନିଜ ବଙ୍ଗଳାରେ ରହିବାକୁ ଅନୁରୋଧ କରିଥିଲେ । ସୌଭାଗ୍ୟ ବଶତଃ ମହମ୍ମଡ଼େନ୍ ହଷ୍ଟେଲରେ ହରିଶ୍ଚନ୍ଦ୍ରଙ୍କୁ ସ୍ଥାନ ମିଳିଯାଇଥିଲା ।

ରେଭେନ୍‌ସା କଲେଜରେ ପ୍ରଥମ ବାର୍ଷିକ କ୍ଲାସ୍‌ରେ ଯେଉଁମାନଙ୍କ ସଙ୍ଗେ ହରିଶ୍ଚନ୍ଦ୍ରଙ୍କର ବନ୍ଧୁତା ଓ ଘନିଷ୍ଠତା ହୋଇଥିଲା ସେମାନେ ହେଲେ ପ୍ରଧାନତଃ—

୧ । ହରିହର ମହାପାତ୍ର
୨ । ପ୍ରାଣକୃଷ୍ଣ ନନ୍ଦ
୩ । ଗୋପାଳ ଚନ୍ଦ୍ର ମହାନ୍ତି
୪ । ରାମଚନ୍ଦ୍ର ଦାଶ
୫ । କାଳନ୍ଦୀଚରଣ ପାଣିଗ୍ରାହୀ
୬ । ଶରତଚନ୍ଦ୍ର ମୁଖାର୍ଜୀ
୭ । ବୈକୁଣ୍ଠ ପଟ୍ଟନାୟକ
୮ । ଅନ୍ନଦା ଶଙ୍କର ରାୟ
୯ । କୃପାସିନ୍ଧୁ ମିଶ୍ର

ଏହି ବନ୍ଧୁମାନଙ୍କ ମଧ୍ୟରେ (୧) କାଳନ୍ଦୀ ଚରଣ ପାଣିଗ୍ରାହୀ, (୨) ଶରତ ମୁଖାର୍ଜୀ, (୩) ଅନ୍ନଦା ଶଙ୍କର ରାୟ, (୪) ବୈକୁଣ୍ଠ ପଟ୍ଟନାୟକ ଓ (୫) ହରିହର ମହାପାତ୍ର ଏହି ପାଞ୍ଚଜଣ ରେଭେନ୍‌ସା କଲେଜ ହଷ୍ଟେଲ ପରିସର ମଧ୍ୟରେ ୧୯୩୦ରେ "ସବୁଜ ସାହିତ୍ୟ ସମିତି" ଗଠନ କରି ଓଡ଼ିଆ ସାହିତ୍ୟରେ ନବଯୁଗର ପ୍ରବର୍ତ୍ତନ କରିଥିଲେ । ପରେ ଯେଉଁ ପାଞ୍ଚଜଣ ସେହି ସମିତିର ସଦସ୍ୟ ହୋଇଥିଲେ ସେଥିରେ ହରିଶ୍ଚନ୍ଦ୍ର ଥିଲେ ଅନ୍ୟତମ ଏବଂ ଏହି "ସବୁଜ ସାହିତ୍ୟ ସମିତି" ଆନୁକୂଲ୍ୟରେ ହରିଶ୍ଚନ୍ଦ୍ରଙ୍କ ସାହିତ୍ୟିକ ପ୍ରତିଭା ବିକଶିତ ହେବାର ସୁଯୋଗ ମିଳିଥିଲା ।

୧୯୨୧ରେ ରେଭେନ୍‌ସା କଲେଜ କଟକ ସହର ମଧ୍ୟରୁ ଉଠିଯାଇ ଖ୍ରୀଷ୍ଟିଆନ୍‌ଗଞ୍ଜର ଚକ୍ରପଡ଼ିଆରେ ନୂତନ ଭବନ ନିର୍ମାଣ ଆରମ୍ଭ ହେଲା । East Block ହଷ୍ଟେଲରେ ହରିଶ୍ଚନ୍ଦ୍ର ଚାରିବର୍ଷ ରହିଥିଲେ । ସେ ସମୟରେ East Block ହଷ୍ଟେଲର ଓ୍ୱାର୍ଡେନ ଥିଲେ ଶ୍ୟାମ ତ୍ରିପାଠୀ । ପରେ West Block ନିର୍ମିତ ହେଲା ଏବଂ ଡଃ ପ୍ରାଣକୃଷ୍ଣ ପରିଜା ଓ୍ୱାର୍ଡେନ ହେଲେ । ଉଭୟ ତ୍ରିପାଠୀ ଓ ଡଃ ପରିଜାଙ୍କ ସହିତ ଭୋଳାନାଥବାବୁ ହରିଶ୍ଚନ୍ଦ୍ରଙ୍କର ପରିଚୟ କରାଇ ଦେଇଥିଲେ । ଉଭୟେ ବଦାନ୍ୟତା ସ୍ୱରୂପ ହରିଶ୍ଚନ୍ଦ୍ରଙ୍କୁ ମାସିକ ଆର୍ଥିକ ସାହାଯ୍ୟ ଦେଇଥିଲେ । ସେମାନେ ଦୁହେଁ ହରିଶ୍ଚନ୍ଦ୍ରଙ୍କୁ ବିଶେଷ ସ୍ନେହ କରୁଥିଲେ ଏବଂ ଆନ୍ତରିକ କୃତଜ୍ଞତା ସହ ହରିଶ୍ଚନ୍ଦ୍ର ଆଜୀବନ ସେମାନଙ୍କ ସହ ଯୋଗାଯୋଗ ରଖିଥିଲେ ।

ହରିଶ୍ଚନ୍ଦ୍ର (P C M.) ବିଷୟ ନେଇ ରେଭେନ୍ସା କଲେଜରେ ଆଇ. ଏସ୍‌ସି. ପଢ଼ିଥିଲେ । ଆଇ. ଏସ୍‌ସି. ପରୀକ୍ଷାରେ ପାଟନା ବିଶ୍ୱ-ବିଦ୍ୟାଳୟରେ ତୃତୀୟ ସ୍ଥାନ ଅଧିକାର କରି ସେ ବୃତ୍ତିଲାଭ କଲେ । ସହପାଠୀ ଜଙ୍ଗାସ୍ୱାମୀ, ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ପାଇ ପରେ ଉଭୟେ B Sc.ରେ Math. (Hon) ନେଇ ୧୯୨୫ରେ ବିଶ୍ୱବିଦ୍ୟାଳୟରେ ଜଙ୍ଗାସ୍ୱାମୀ ପ୍ରଥମ ଓ ହରିଶ୍ଚନ୍ଦ୍ର ତୃତୀୟ ସ୍ଥାନ ଅଧିକାର କରିଥିଲେ । ରେଭେନ୍ସା କଲେଜରେ M. Sc ରେ Chemestry ନଥିବା ଯୋଗୁଁ ହରିଶ୍ଚନ୍ଦ୍ର ପାଟନା ପଢ଼ିବାକୁ ଯାଇଥିଲେ । ପାଟନାରେ ପଢ଼ିବା ସମୟରେ କଟକର ଚନ୍ଦ୍ର ପରିବାରର ନଧେଶ୍ୱରଚନ୍ଦ୍ର ଚନ୍ଦ୍ର ହରିଶ୍ଚନ୍ଦ୍ରଙ୍କୁ ଅର୍ଥ ସାହାଯ୍ୟ କରୁଥିଲେ । ନଧେଶ୍ୱରବାବୁ ନିଜେ ମୁନ୍‌ସଫ୍ ଥିଲେ ଏବଂ ବିଚାର ବିଭାଗରେ ଚାକିରିର ସୁବିଧା ହେବ ବିଚାରି ସେ ସ୍ଥିର କରିଥିଲେ ଯେ ହରିଶ୍ଚନ୍ଦ୍ର ଆଇନ ପଢ଼ନ୍ତୁ । ଏଣୁ ପାଟନାରେ କେମେଷ୍ଟ୍ରି ନେଇ M. Sc. ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ସେ B L. ପଢ଼ିଥିଲେ ।

ପାଟନା ଇଉନିଭର୍ସିଟିରେ ତୃତୀୟ ସ୍ଥାନ ଅଧିକାର କରିଥିବାରୁ ହରିଶ୍ଚନ୍ଦ୍ରଙ୍କର ଆଶା ଥିଲା ଯେ, ବିଲାତରେ ରସାୟନ ଶାସ୍ତ୍ରରେ ଉଚ୍ଚତର ଶିକ୍ଷାଲାଭ କରିବା ପାଇଁ ଷ୍ଟେଟ୍ ସ୍କଲାରସିପ ପାଇବେ । ମାତ୍ର ଏକବର୍ଷ ପରେ ଉକ୍ତ ଷ୍ଟେଟ୍ ସ୍କଲାରସିପ୍ ପାଇଁ ପ୍ରାର୍ଥୀ ନିର୍ବାଚନ ହେଲାବେଳକୁ ତାଙ୍କଠାରୁ ବର୍ଷେ ତଳଶ୍ରେଣୀର ବଳଭଦ୍ର ପ୍ରସାଦ ଓ କମଳୁଦ୍ଦୀନ ଉଭୟେ ରସାୟନରେ ଫାଷ୍ଟକ୍ଲାସ ଅନର୍ସ ପାଇ ଷ୍ଟେଟ୍ ସ୍କଲର୍ସିପ୍ ପ୍ରାର୍ଥୀରୂପେ ନିର୍ବାଚିତ ହୋଇ ବିଲାତ ଯିବାର ସୁଯୋଗ ପାଇଲେ । ହରିଶ୍ଚନ୍ଦ୍ର ନିଶ୍ଚିତଭାବେ ହୃଦୟଙ୍ଗମ କଲେ ଯେ, ଏମ୍.ଏସ୍.ସି.ରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ ସୁଦ୍ଧା ଚାକିରି କ୍ଷେତ୍ରରେ ତାଙ୍କର ଉନ୍ନତିର ସମ୍ଭାବନା କ୍ଷୀଣ । ତେଣୁ ଏମ୍:ଏସ:ସି ପରୀକ୍ଷାରେ ଯୋଗ ନ ଦେଇ ସେ ସର୍ବଭାରତୀୟ ପ୍ରତିଯୋଗିତା-ମୂଳକ ବିଭିନ୍ନ ପରୀକ୍ଷାରେ ଅଂଶଗ୍ରହଣ କରିବାକୁ ମନସ୍ଥ କଲେ ।

୧୯୨୭ରେ ସେ ଆଇ:ସି:ଏସ୍ ପରୀକ୍ଷା ଦେଲେ, ମାତ୍ର ଦୁର୍ଭାଗ୍ୟର ବିଷୟ ହେଥିରେ ସାମାନ୍ୟ କିଛି ନମ୍ବର କମ ରହିବାରୁ ସେ ଆଇ:ସି.ଏସ୍ ଭାବେ ନିର୍ବାଚିତ ହେବାରୁ ବଞ୍ଚିତ ହେଲେ । ପରବର୍ତ୍ତୀ ବର୍ଷ ସର୍ବଭାରତୀୟ ଅର୍ଥ ଓ ରେଳ ବିଭାଗରେ ଅଂଶଗ୍ରହଣ କରି ସେଥିରେ ସଫଳତା ଲାଭ କଲେ

ଏବଂ ଜୀବନର ଏକତିରିଶ ବର୍ଷ କାଳ ରେଳ ବିଭାଗରେ ଜଣେ ଦକ୍ଷ ଅଫିସର ରୂପେ କାର୍ଯ୍ୟ କରିଥିଲେ ।

**ଖେଳ କୌତୁକ**—ଛାତ୍ର ଜୀବନରେ ଅନ୍ୟ କଳା କୁଶଳତା ମଧ୍ୟରେ ହରିଶ୍ଚନ୍ଦ୍ର କ୍ରୀଡ଼ା କୌତୁକରେ ଅଂଶଗ୍ରହଣ କରୁଥିଲେ । ଇତିମଧ୍ୟରେ ସେ ପିଲାଦିନର ଶାରୀରିକ ଦୁର୍ବଳତାକୁ ଅତିକ୍ରମ କରି ସ୍ୱାସ୍ଥ୍ୟ ଗଠନରେ ସଫଳତା ଅର୍ଜ୍ଜନ କରିଥିଲେ । ରେଭେନ୍‌ସା କଲେଜରେ 'ଏ' ଟିମ୍‌ର ଜଣେ ଫୁଟବଲ ଖେଳାଳି ହିସାବରେ ସେ ଯୋଗଦେଲେ ଏବଂ ପାଟନାରେ ଫୁଟବଲ କ୍ୟାପଟେନ ହେବାର ଗୌରବ ଅର୍ଜନ କରିଥିଲେ । ପାଟନାରେ ପାଞ୍ଚମାଇଲ ଦୌଡ଼ରେ ସେ ପ୍ରଥମ ପୁରସ୍କାର ଲାଭ କରିଥିଲେ । ସନ୍ତରଣ ଥିଲା ତାଙ୍କର ଅନ୍ୟ ଏକ ପ୍ରିୟ ଖେଳ । ଏହି ସନ୍ତରଣ କଳାରେ ବିଶେଷ ଦକ୍ଷତା ହାସଲ କରି ପାଟନାରେ ଗଙ୍ଗା ନଦୀର ଏ କୂଳରୁ ପହଁରି ଯାଇ ବିଶ୍ରାମ ନ ନେଇ ଆର୍‌କୂଳରୁ ଫେରି ଆସୁଥିଲେ ।

**ଚାକିରି**—ହରିଶ୍ଚନ୍ଦ୍ରଙ୍କର ଗୋଟିଏ ପ୍ରବନ୍ଧ ପଢ଼ି ମୁଗ୍ଧହୋଇ ମୋହିନୀମୋହନ ସେନାପତି ତାଙ୍କୁ କଲେଜରେ ବିଜ୍ଞାନ ନ ପଢ଼ି କଳା ପଢ଼ିବାକୁ ଉପଦେଶ ଦେଇଥିଲେ । କିନ୍ତୁ ହରିଶ୍ଚନ୍ଦ୍ର ରେଭେନ୍‌ସା କଲେଜରେ ଆଇ.ଏସ୍‌.ସି ପଢ଼ିଲେ । ପୁଣି ଶିବପୁରରେ ରେଳବିଭାଗ କଲେଜରେ ପ୍ରିନ୍‌ସପାଲ କର୍ଣ୍ଣେଲ ଓ୍ୱାଗ୍‌ଷ୍ଟାଫ ଶେଷ ପରୀକ୍ଷାରେ ହରିଶ୍ଚନ୍ଦ୍ରଙ୍କ ନିବନ୍ଧର ଯୁକ୍ତିରେ ଚମତ୍କୃତ ହୋଇ କହିଥିଲେ ଯେ Law is your line, not the Railways" କିନ୍ତୁ ହରିଶ୍ଚନ୍ଦ୍ରଙ୍କ ଭାଗ୍ୟ ଏପରି ଯେ, ସେ କଲେଜରେ କଳା ପରିବର୍ତ୍ତେ ବିଜ୍ଞାନ ପଢ଼ିଲେ । ପୁଣି ଜିଲ୍ଲା ଜଜ୍ ନିଧେଶ୍ୱର ଚନ୍ଦ୍ରଙ୍କ ପରାମର୍ଶ ଅନୁସାରେ ଆଇନ ବିଭାଗର ଚାକିରି ନ କରି କର୍ଣ୍ଣେଲ ଓ୍ୱାଗଷ୍ଟାଫଙ୍କ ମନ୍ତବ୍ୟ ସତ୍ତ୍ୱେ ଭାରତୀୟ ରେଳ ବିଭାଗରେ ଚାକିରି ଗ୍ରହଣ କରିଥିଲେ । ଇଂରେଜ ଅମଳରେ ଭାରତୀୟ ରେଳବିଭାଗରେ କେବଳ ଇଉରୋପୀୟ ସାହେବମାନେ ଉଚ୍ଚପଦର ଅଧିକାରୀ ହେଉଥିଲେ । ସେହି ସାହେବମାନଙ୍କ ଗହଣରେ ଜଣେ ଉଚ୍ଚପଦସ୍ଥ ସୁଦକ୍ଷ ଅଫିସର ରୂପେ ଦୀର୍ଘକାଳ ନିଜର ଦାୟିତ୍ୱକୁ ସଫଳତାର ସହ ତୁଲାଇବାକୁ ସେ ସକ୍ଷମ ହୋଇଥିଲେ ।

୧୯୨୮ ମାର୍ଚ୍ଚ ୨୦ ତାରିଖରେ ଗ୍ରେଟ୍ ଇଣ୍ଡିୟାନ ପେନିନ୍‌ସୁଲା ରେଳ ବିଭାଗରେ ବମ୍ବେରେ ଜଣେ ପ୍ରବେଶନାରୀ ଅଫିସର ରୂପେ ହରିଶ୍ଚନ୍ଦ୍ର ଯୋଗ ଦେଇଥିଲେ ।

ତିନିବର୍ଷ ପରେ ଡେରାଡୁନ ରେଳ ବିଭାଗ କଲେଜ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ୧୯୩୧ ଅପ୍ରେଲରେ ସେ ସ୍ଥାୟୀ ଅଫିସର ପଦରେ ଭୂସାୱାଲଠାରେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ଚାକିରିକାଳ ମଧ୍ୟରେ ସେ ବମ୍ବେ ଓ ଭୂସାୱାଲ ବ୍ୟତୀତ ଜବଲପୁର, ଝାନ୍‌ସୀ, ନାଗପୁର ଓ ସୋଲାପୁର ଡିଭିଜନର ସୁପରିଣ୍ଟେଣ୍ଡେଣ୍ଟ ରୂପେ କାର୍ଯ୍ୟ କରିଥିଲେ । ଚାକିରିର ଅନ୍ତିମ ପର୍ଯ୍ୟାୟରେ ରେଳ ବିଭାଗର ଡିଭିଜନାଲ ସୁପରିଣ୍ଟେଣ୍ଡେଣ୍ଟ ପଦରେ ଭୂସାୱାଲରୁ ୧୯୫୯ ମାର୍ଚ୍ଚ ୩୧ରେ ସେ ସମ୍ମାନର ସହିତ ଅବସର ଗ୍ରହଣ କରିଥିଲେ ।

**ବିଶ୍ୱଭ୍ରମଣ**— ସାହିତ୍ୟ ସାଧନା ଓ କ୍ରୀଡ଼ା କୌତୁକ ବ୍ୟତୀତ ହରିଶ୍ଚନ୍ଦ୍ରଙ୍କ ଜୀବନରେ ଅନ୍ୟ ଯେଉଁ ବିଷୟରେ ପ୍ରବଳ ଆଗ୍ରହ ଥିଲା, ତାହା ହେଲା ପର୍ଯ୍ୟଟନ । ପାଠ୍ୟପୁସ୍ତକ ବାହାରେ ବିଭିନ୍ନ ଦେଶର ଭୂଗୋଳ ଓ ଭ୍ରମଣ କାହାଣୀ ପଢ଼ିବାରେ ସ୍କୁଲ ଜୀବନରୁ ହିଁ ହରିଶ୍ଚନ୍ଦ୍ରଙ୍କର ଆଗ୍ରହ ଥିଲା । ସାର ୱାଲଟର ସ୍କଟ ଓ ଅନ୍ୟାନ୍ୟ ବିଦେଶୀ ଲେଖକଙ୍କ ଉପନ୍ୟାସ ବିଶେଷ କରି ରୋମାଞ୍ଚକର ଗୋଇନ୍ଦା କାହାଣୀ ପ୍ରତି ତାଙ୍କର ବିଶେଷ ଆକର୍ଷଣ ଥିଲା । ସେ ସ୍କୁଲ ଛାତ୍ର ଥିବା ସମୟରେ ଜଣେ ସମ୍ଭ୍ରାନ୍ତ ପଡ଼ୋଶୀ ଘରର ପୁନର୍ନିର୍ମାଣ ସମୟରେ ସେମାନେ ଅନେକ ପୁରୁଣା ବହି ଫୋପାଡ଼ି ଦେଇଥିଲେ । ସେଥିମଧ୍ୟରୁ ସେ ଭୂଗୋଳ ଓ ଅନ୍ୟ କେତେକ ବହି ସଂଗ୍ରହ କରି ସବୁ ଦେଶର ଭୌଗୋଳିକ ବିବରଣ ସଂଗ୍ରହ କରିଥିଲେ । ପରିଣାମରେ ତରୁଣ ଅବସ୍ଥାରୁ ତାଙ୍କ ମନରେ ବିଶ୍ୱଭ୍ରମଣ କରି ସବୁକିଛି ନିଜ ଆଖିରେ ଦେଖିବାର ପ୍ରବଳ ବାସନା ଜନ୍ମିଥିଲା । ଜୀବନର ସେହି ଆକାଂକ୍ଷାକୁ ପୂରଣ କରିବାର ସେ ସୁଯୋଗ ପାଇଲେ ୧୯୩୭ର ମାର୍ଚ୍ଚ ମାସରେ । ନିଜ ଖର୍ଚ୍ଚରେ ସମଗ୍ର ପୃଥିବୀ ଭ୍ରମଣ କରି ପ୍ରାଚ୍ୟ ଓ ପାଶ୍ଚାତ୍ୟର ତିରିଶଟିରୁ ବେଶି ଦେଶକୁ ସେ ବୁଲି ଦେଖିଥିଲେ । ସେ ସମୟରେ ଭାରତୀୟ ରେଳବିଭାଗ ସହିତ ସବୁଦେଶର "ଫ୍ରି ପାସ" ବିନିମୟର ବ୍ୟବସ୍ଥା ଥିଲା ଏବଂ ହରିଶ୍ଚନ୍ଦ୍ର ସେହି ସୁଯୋଗ ଲାଭ କରି ପାରିଥିଲେ । ସମୁଦ୍ର ପାରିହେବା ପାଇଁ ଜଳଜାହାଜ

ଓ ଉଡ଼ାଜାହାଜରେ ସେ ଭ୍ରମଣ କରିଥିଲେ । ବିଶେଷ କରି ସୁଦୂର ପ୍ରାଚ୍ୟ ଦେଶରେ ପ୍ରାଚୀନ ଭାରତର ସଂସ୍କୃତିର ନିଦର୍ଶନ ଥିବା କଥା ଜାଣିଥିବାରୁ ସେ ଜାପାନ, ଚୀନ, ଶ୍ୟାମ, ମାଳୟ, କାମ୍ବୋଡ଼ିଆ, ଜାଭା, ସୁମାତ୍ରା ଓ ବାଲିଦ୍ୱୀପକୁ ବିଶେଷ ଆଗ୍ରହର ସହିତ ପରିଦର୍ଶନ କରିଥିଲେ । ଜାପାନର କାମାକୁରାରେ ଥିବା ଅତିକାୟ ବୁଦ୍ଧମୂର୍ତ୍ତି, କାମ୍ବୋଡ଼ିଆର ଅଙ୍କରଓ୍ୱାଟର, ମହାଭାରତ ଯୁଦ୍ଧର ସ୍ତୂପର ଭଗ୍ନାବଶେଷର ମୂର୍ତ୍ତିଭାସ୍କର୍ଯ୍ୟର ଶିଳ୍ପର ନିଦର୍ଶନ, ଜାଭାର ବିଶ୍ୱବିଖ୍ୟାତ ବୋରୋବୁଦୁର ସ୍ତୂପ ଓ ବାଲିଦ୍ୱୀପର ହିନ୍ଦୁ ଗୁମ୍ଫା ଥିଲା ବିଶେଷ ଆକର୍ଷଣୀୟ । ଜାପାନରେ ଦୁଇସପ୍ତାହ ରହଣି ସମୟରେ ଜଣେ ଜାପାନୀ ଶିଳ୍ପପତିଙ୍କ ଆତିଥ୍ୟରେ ସେ ବହୁ ଦ୍ରଷ୍ଟବ୍ୟ ସ୍ଥାନ ଓ ବିଖ୍ୟାତ ପ୍ରାଚୀନ ଜାପାନୀ ନାଟକ ଦେଖିବାର ସୁଯୋଗ ପାଇଥିଲେ ।

**ବିବାହ ଓ ପାରିବାରିକ ଜୀବନ—**

ବାଲେଶ୍ୱରର ସୁବର୍ଣ୍ଣ ବଣିକ ସମ୍ପ୍ରଦାୟ ଶିକ୍ଷାଦିଗରେ ଅନଗ୍ରସର ଥିଲେ । ହରିଶ୍ଚନ୍ଦ୍ର ମେଟ୍ରିକ ପାଶକରିବା ପୂର୍ବରୁ ବିବାହଯୋଗ୍ୟା ଝିଅଙ୍କ ଅଭିଭାବକମାନେ କେତେକ ସମ୍ବନ୍ଧ ଆଣିଥିଲେ । ଭାବୀ ଜାମାତାର ଉଚ୍ଚତର ଶିକ୍ଷାର ଖର୍ଚ୍ଚ ଯୋଗାଇବାର ଲୋଭନୀୟ ପ୍ରସ୍ତାବ ଦେବାଠାରୁ ଆରମ୍ଭ କରି ସ୍ୱକରର ସୁବିଧା କରିବାର ପ୍ରତିଶ୍ରୁତିକୁ ଏଡ଼ାଇଦେବା ବିଧବା ମାତାଙ୍କ ପକ୍ଷରେ ସହଜ ନଥିଲା । ଏହି ଘଡ଼ିସନ୍ଧି ସମୟରେ ଭୋଳାନାଥ ବାବୁଙ୍କର ଆବିର୍ଭାବ ହରିଶ୍ଚନ୍ଦ୍ରଙ୍କ ପାଇଁ କଲ୍ୟାଣକର ହୋଇଥିଲା । ହରିଶ୍ଚନ୍ଦ୍ରଙ୍କ ଜୀବନରେ ଉଚ୍ଚତର ଶିକ୍ଷା ଦରକାର ଏବଂ ସେ ବିବାହ କଲେ ପାଠରେ ବ୍ୟାଘାତ ହେବ । ଭୋଳାନାଥ ବାବୁଙ୍କର ଏପରି ଦୃଢ଼ ଧାରଣାଯୋଗୁଁ ହରିଶ୍ଚନ୍ଦ୍ରଙ୍କ ମାତା ବିବାହର ଲୋଭନୀୟ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଇଥିଲେ ।

ଭୋଳାନାଥ ବାବୁଙ୍କର ଗୋଟିଏ ନାତୁଣୀ ଥିଲା । ସେ ଝିଅଟି ଥିଲା ଜନ୍ମରୁ ମୂକ ଓ ବଧିର ।

ଭୋଳାନାଥ ବାବୁଙ୍କ ଅଗୋଚରରେ ତାଙ୍କ ପୁଅ ସେହି ମୂକ ଓ ବଧିର ଝିଅଟିର ବିବାହ ପ୍ରସ୍ତାବ ଆଣିଥିଲେ । ହରିଶ୍ଚନ୍ଦ୍ରଙ୍କ ମାତା ଏ ସମ୍ବନ୍ଧକୁ ପ୍ରତ୍ୟାଖ୍ୟାନ କରିବାକୁ ଦ୍ୱିଧା କରୁଥିଲେ । ପରେ ଏକଥା

ଭୋଳାନାଥ ଜାଣି ଶୁଣି ମଧ୍ୟ ନିଜ ନାତୁଣୀର ବିବାହ ପ୍ରସ୍ତାବକୁ ନାକଚ କରିଦେଉଥିଲେ ।

ହରିଶ୍ଚନ୍ଦ୍ର ପାଠନାରେ ପଢ଼ିବା ସମୟରେ କଟକର ଚନ୍ଦ୍ର ପରିବାରର ପ୍ରଖ୍ୟାତ ଜିଲ୍ଲା ଜଜ୍ ବିଧେଶ୍ୱର ଚନ୍ଦ୍ର ତାଙ୍କୁ ଅର୍ଥସାହାଯ୍ୟ କରିଥିଲେ । ରେଳବିଭାଗରେ ହରିଶ୍ଚନ୍ଦ୍ର ଚାକିରିରେ ନିଯୁକ୍ତ ପାଇଲା ପରେ ଚନ୍ଦ୍ର ମହାଶୟଙ୍କର ଦୁଇକନ୍ୟା ମଧ୍ୟରୁ ଜଣଙ୍କ ସହିତ ସମ୍ବନ୍ଧ କରିବାକୁ ପ୍ରସ୍ତାବ ଦେଇଥିଲେ । ୧୯୩୧ ରେ ହରିଶ୍ଚନ୍ଦ୍ର ସ୍ଥାୟୀ ନିଯୁକ୍ତିପରେ ବିବାହ କରିବାକୁ ରାଜିହେଲେ । ୧୯୩୨ ଫେବୃଯ଼ାରୀ ମାସରେ ଚନ୍ଦ୍ରଙ୍କର ଦ୍ୱିତୀୟା କନ୍ୟା ହେଲୁବାଳାଙ୍କ ସହିତ ଶୁଭପରିଣୟ ସମ୍ପାଦିତ ହୋଇଥିଲା ।

**ମାତୃବିୟୋଗ**—ସେ ସମୟରେ ହରିଶ୍ଚନ୍ଦ୍ର ବମ୍ବେରେ ସ୍ଥାୟୀ ଚାକିରିରେ ଥାନ୍ତି । ନଅମାସ ମଧ୍ୟରେ ମାଆ ପଡ଼ୋଶୀ ବିପିନ ଚନ୍ଦ୍ରଦେଙ୍କ ପରିବାର ସହ ତୀର୍ଥ ଭ୍ରମଣରେ ଯାଇଥିଲେ । ସେ ଗୟା, କାଶୀ, ମଥୁରା, ବୃନ୍ଦାବନ ଆଦି ତୀର୍ଥଦର୍ଶନ କରି ଫେରିବା ବାଟରେ ଦାରୁଣ କାଶରୋଗରେ ପୀଡ଼ିତ ହେଲେ । ଅବସ୍ଥା ଶୋଚନୀୟ ହେବାରୁ ତାଙ୍କର ଚିକିତ୍ସା ପାଇଁ ବିପିନବାବୁ ଗୟାରେ ଓହ୍ଲାଇବାକୁ ବାଧ୍ୟ ହେଲେ । ଉପଯୁକ୍ତ ଚିକିତ୍ସାସତ୍ତ୍ୱେ ପବିତ୍ର ଗୟାଧାମରେ ମାତା ହାରାମଣି ଦେବୀ ଶେଷ ନିଃଶ୍ୱାସ ତ୍ୟାଗ କଲେ । ବିପିନବାବୁ ସେଠାରେ ତାଙ୍କର ଶେଷ ସଂସ୍କାର କରିଥିଲେ । ଆରାଧ୍ୟା ମାତାଙ୍କର ଜୀବନର ଶେଷ ମୁହୂର୍ତ୍ତରେ ହରିଶ୍ଚନ୍ଦ୍ର ପାଖରେ ରହିନଥିବାରୁ ତାଙ୍କ ପକ୍ଷରେ ଘୋର ପରିତାପର ବିଷୟ ହୋଇ ରହିଛି । ଟେଲିଗ୍ରାମଦ୍ୱାରା ମାତାଙ୍କ ମୃତ୍ୟୁ ସମ୍ବାଦ ପାଇ ବମ୍ବେରୁ ହରିଶ୍ଚନ୍ଦ୍ର ଘରକୁ ଆସି ମାତାଙ୍କର ଶ୍ରାଦ୍ଧ ସମ୍ପାଦନ କଲେ ।

**ସାହିତ୍ୟ ସାଧନା**—

ବାଲେଶ୍ୱର ଜିଲ୍ଲାସ୍କୁଲର ଦ୍ୱିତୀୟ ପଣ୍ଡିତ ପୂଜ୍ୟ ଅନନ୍ତ ମିଶ୍ରଙ୍କ ଠାରୁ କାବ୍ୟ କବିତା ଦିଗରେ ହରିଶ୍ଚନ୍ଦ୍ର ପ୍ରଥମ ପ୍ରେରଣା ପାଇଥିଲେ ଏବଂ ସଂସ୍କୃତ ସାହିତ୍ୟ ପ୍ରତି ଘୋର ଅନୁରାଗ ସଞ୍ଚରିତ ହୋଇଥିଲା । ସ୍କୁଲ ବିଭାଗରୁ ଅବସର ଗ୍ରହଣ କରିଥିବା ଏସ. ଆଇ ଭୋଳାନାଥବାବୁ ସେ ସମୟର ସ୍କୁଲ ସମୂହର ଡେପୁଟି ଇନ୍‌ସପେକ୍ଟର କବିବର ରାଧାନାଥ ରାୟଙ୍କ ଅଧୀନରେ କାର୍ଯ୍ୟ କରିଥିଲେ । ସେ ସ୍କୁଲଛାତ୍ର ହରିଶ୍ଚନ୍ଦ୍ରଙ୍କୁ

ରାଧାନାଥ ଗ୍ରନ୍ଥାବଳୀଟିଏ ଉପହାର ଦେଇଥିଲେ । ବାଳକ ହରିଶ୍ଚନ୍ଦ୍ର ରାଧାନାଥ ଗ୍ରନ୍ଥାବଳୀ ମାଧ୍ୟମରେ ପ୍ରଥମ ଓଡ଼ିଆକାବ୍ୟ ଜଗତରେ ପ୍ରବେଶ କରିଥିଲେ । ଚାକିରି ପାଇବାରେ ସୁବିଧା ହେବ ବିଚାରି ସେ କଲେଜରେ କଳା ପରିବର୍ତ୍ତେ ବିଜ୍ଞାନ ଶିକ୍ଷା ନିର୍ବାଚନ କରିଥିଲେ । ତାଙ୍କ ମଧ୍ୟରେ କଳାପ୍ରୀତି ଓ ସାହିତ୍ୟାନୁରାଗ ଦୀର୍ଘକାଳ ସୁପ୍ତ ଥିଲା । ହେଲେ ଚାକିରିରେ ନିଯୁକ୍ତ ହେବା ପରେ ସେ ସଂସ୍କୃତ ସାହିତ୍ୟ ଚର୍ଚ୍ଚା ଆରମ୍ଭ କରିଥିଲେ । ମହାକବି କାଳିଦାସଙ୍କ 'ଅଭିଜ୍ଞାନ ଶକୁନ୍ତଳମ୍' ଓ ଜୟଦେବଙ୍କ 'ଗୀତ-ଗୋବିନ୍ଦ' ଅଧ୍ୟୟନ କଲେ । ବୈବକ୍ରମେ ରାମଙ୍କର ସମସ୍ତ ସଂକଳନ ତାଙ୍କର ହସ୍ତଗତ ହୋଇଥିଲା । ଶ୍ରୀମଦ୍ଭଗବଦ୍ ଗୀତା ତାଙ୍କୁ ମୁଗ୍ଧ କରିଥିଲା । ବାଲେଶ୍ୱରରେ ସ୍କୁଲରେ ପଢ଼ୁଥିବା ସମୟରେ ଲାଲଗୀର୍ଜ୍ଜାର ବଡ଼ ପାଦ୍ରୀଙ୍କ ଖ୍ରୀଷ୍ଟ ଧର୍ମର ସଂକ୍ଷିପ୍ତ ସାର ପାଠ କରିଥିଲେ । ପରେ କୋରାନଗ୍ରନ୍ଥ ସଂଗ୍ରହ କରି ସେଥିରୁ ଇସ୍‌ଲାମତତ୍ତ୍ୱ ଅଧ୍ୟୟନ କରିଥିଲେ ।

ହରିଶ୍ଚନ୍ଦ୍ର କଟକରେ ପଢ଼ିବା ସମୟରେ ସହପାଠୀ କାଳନ୍ଦୀ ଚରଣ, ଅନ୍ନଦାଶଙ୍କର, ବୈକୁଣ୍ଠ ପଟ୍ଟନାୟକ, ହରିହର ମହାପାତ୍ର, ଶରତ ମୁଖାର୍ଜୀ 'ସବୁଜ ସାହିତ୍ୟ ସମିତି' ଗଠନର ସଂକଳ୍ପ ନେଇ ଜଣେ ପ୍ରାଥମିକ ସଦସ୍ୟ ହିସାବରେ ହରିଶ୍ଚନ୍ଦ୍ରଙ୍କୁ ନିମନ୍ତ୍ରଣ ଦେଇଥିଲେ । ହରିଶ୍ଚନ୍ଦ୍ର ତାହା ଉତ୍ସାହର ସହିତ ୧୯୩୧ ରେ ଗ୍ରହଣ କରିଥିଲେ । ସେହି ସମୟରୁ ସେ ନିୟମିତ ସାରସ୍ୱତ ସାଧନାରେ ବ୍ରତୀ ହେଲେ । ସେ ସମୟରେ ପ୍ରକାଶ ପାଉଥିବା ସାହିତ୍ୟ ପତ୍ରିକା-ଉତ୍କଳ ସାହିତ୍ୟ, ସହକାର, ନବଭାରତ ଓ ସବୁଜ ସାହିତ୍ୟର ମୁଖପତ୍ର ଯୁଗବାଣୀରେ ପ୍ରବନ୍ଧ, ଗ୍ଳେଷଗଳ୍ପ, ସମାଲୋଚନା, ରମ୍ୟରଚନା ପ୍ରତି ମାସରେ ଲେଖୁଥିଲେ । ୧୯୩୧ ରୁ ୧୯୩୮ ମଧ୍ୟରେ 'ସବୁଜ ସାହିତ୍ୟ ସମିତି' ଆନୁକୂଲ୍ୟରେ ତାଙ୍କର ନିମ୍ନଲିଖିତ ପୁସ୍ତକ ପ୍ରକାଶ ପାଇଥିଲା ।

(୧) ଦେଶର ଡାକ—ନାଟକ
(୨) ଲୀଳାସଙ୍ଗିନୀ—ଗୀତିନାଟ୍ୟ
(୩) ସ୍ୱାମୀବାବା—ହାସ୍ୟରସର ଗ୍ଳେଷଗଳ୍ପ
(୪) ଅନାବନା—ଗଳ୍ପ ସଂଗ୍ରହ
(୫) ଶଠର ଜବାବ—ରମ୍ୟରଚନା
(୬) ପ୍ରବାସ ପ୍ରଣୟ—ଉପନ୍ୟାସ (ପ୍ରଥମଭାଗ)

ଏହି ରଚନାବଳୀ ମଧ୍ୟରେ ସାହିତ୍ୟିକ କୃତି ହିସାବରେ ହରେକୃଷ୍ଣ ବରାଳ ମହାଶୟ ଗୀତିନାଟ୍ୟ ଲୀଳା, ସଙ୍ଗିନୀକୁ ଶ୍ରେଷ୍ଠ ବୋଲି ବିଚାର କରନ୍ତି, କିନ୍ତୁ ପରିତାପର ବିଷୟ ମୁଦ୍ରଣପରେ ପୁସ୍ତକଟି ପ୍ରଚାରିତ ହୋଇ ପାରିନଥିଲା । କାରଣ ୧୯୩୯ ବେଳକୁ ସବୁଜ ସାହିତ୍ୟ ସମିତିର ସଦସ୍ୟ ମାନେ ବିଦେଶରେ ଚାକିରି କରୁଥିବାରୁ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ପଡ଼ିଥିଲେ । ଫଳରେ ସମିତିରୁ ପ୍ରକାଶିତ ପୁସ୍ତକଗୁଡ଼ିକ କଟକ ଟ୍ରେଡ଼ିଂ କମ୍ପାନୀର ଅଫିସରେ ପଡ଼ି ରହିଥିଲା । ବରାଳ ମହାଶୟଙ୍କର ସାହିତ୍ୟ ସାଧନାର ସମୟ ମୋଟାମୋଟି ୧୯୩୦ ରୁ ୧୯୪୦ ଏହି ଦଶବର୍ଷ ମଧ୍ୟରେ ସୀମିତ ଥିଲା । ସେହି ସମୟରେ ସେ ସୁଦୂର ମହାରାଷ୍ଟ୍ରର ଭୁସାୱାଲ, ବମ୍ବେ ଓ ଝାନସିର ରେଳବିଭାଗରେ ଅବସ୍ଥାନ କରୁଥିଲେ ମଧ୍ୟ ଓଡ଼ିଶାର ପତ୍ର-ପତ୍ରିକାର ସମ୍ପାଦକମାନଙ୍କ ସହିତ ସେ ନିୟମିତ ଭାବେ ଯୋଗାଯୋଗ ରକ୍ଷା କରିଥିଲେ ।

'ସହକାର'ର ସମ୍ପାଦକ ବାଳକୃଷ୍ଣ କର ତାଙ୍କର ଜଣେ ଅନୁରାଗୀ ଓ ଉତ୍ସାହୀ ବନ୍ଧୁ ଥିଲେ । ରାଜନୈତିକ ନେତା ତଥା ବିଶିଷ୍ଟ ସାହିତ୍ୟିକ ହରେକୃଷ୍ଣ ମହତାବ ତାଙ୍କୁ ସ୍ନେହ କରୁଥିଲେ ଓ ଝଙ୍କାରରେ ତାଙ୍କର ରଚନା ପ୍ରକାଶ କରୁଥିଲେ ।

ସାହିତ୍ୟ ସାଧନାରୁ ବିରତ ହେବାର ପ୍ରଧାନ କାରଣ ସ୍ୱରୂପ ବରାଳ ମହୋଦୟ କହନ୍ତି ଯେ, ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଏ ଦେଶରୁ ଇଂରେଜ ରାଜତ୍ୱର ଅବସାନ ଘଟିଲା । ରେଳ ବିଭାଗର ଇଂରେଜ ଓ ଆଙ୍ଗ୍ଲୋଇଣ୍ଡିଆନ୍ କର୍ମଚାରୀ ମଧ୍ୟ ଏ ଦେଶ ଛାଡ଼ି ଚାଲିଗଲେ । ଏଣୁ ରେଳ ବିଭାଗର ପରିଚାଳନାର ଦାୟିତ୍ୱ ଭାରତୀୟ କର୍ମଚାରୀଙ୍କ ଉପରେ ପଡ଼ିଲା । ସେତେବେଳେ ଇଉରୋପୀୟ ଅଫିସରବୃନ୍ଦ ଧମକ ଦେଇଗଲେ । କହିଲେ, ଭାରତୀୟ ରେଳ ବିଭାଗ ଏକ ଅନୁଷ୍ଠାନ ହିସାବରେ ଶ୍ରେଷ୍ଠତ୍ୱ ଅର୍ଜନ କରିଥିଲା । ମାତ୍ର ସେମାନେ ଗଲା ପରେ ପାଞ୍ଚବର୍ଷ ମଧ୍ୟରେ ସେ ଅନୁଷ୍ଠାନ ଭୁଷୁଡ଼ି ପଡ଼ିବ । ରେଳ ବିଭାଗର ଜଣେ ବରିଷ୍ଠ ଅଫିସର ହିସାବରେ ଶ୍ରୀଯୁକ୍ତ ବରାଳବାବୁ ଦୃଢ଼ସଂକଳ୍ପ ନେଇଥିଲେ ଯେ ସେହିଦିନଠାରୁ ଭାରତୀୟ ରେଳ କର୍ମଚାରୀ ସମ୍ପ୍ରଦାୟର ପ୍ରତ୍ୟେକେ ନିଜ ନିଜ କର୍ତ୍ତବ୍ୟରେ ପୂର୍ଣ୍ଣ ଆତ୍ମନିୟୋଗ କରିବେ । ଆଦର୍ଶନିଷ୍ଠ ହରିଶ୍ଚନ୍ଦ୍ର ସେହି ସଂକଳ୍ପକୁ ନିଜ

ଭବିଷ୍ୟତ ଜୀବନର ଉଜ୍ଜ୍ୱଳ ରୂପ ନିର୍ବାଚନ କରି ସେ ବିରାଟ ଆହ୍ୱାନର ସମ୍ମୁଖୀନ ହୋଇଥିଲେ ।

**ଜୀବନାଦର୍ଶ ଓ ଜୀବନଦର୍ଶନ**—ହରିଶ୍ଚନ୍ଦ୍ର ଯେଉଁ ଜୀବନାଦର୍ଶ ଓ ଚରିତ୍ର ଗଠନର ପ୍ରେରଣା ଲାଭ କରିଥିଲେ ତାହାର ମୂଳଉତ୍ସ ନିହିତ ଥିଲା ନିଜ ପିତାମାତାଙ୍କ ଜୀବନ ମଧ୍ୟରେ । ନିଷ୍ଠାବତୀ ଜନନୀ ହାରାମଣିଙ୍କର ଗଭୀର ଈଶ୍ୱରଭକ୍ତି ଓ ଧୈର୍ଯ୍ୟଶକ୍ତି ଯେପରି ହରିଶ୍ଚନ୍ଦ୍ରଙ୍କ ଜୀବନରେ ପ୍ରତିଫଳିତ ହୋଇଛି ସେହିପରି ପରୋପକାରିତା, ଆକାଶପରି ମନର ଉଦାରତା ଓ ମୁକ୍ତହସ୍ତରେ ବ୍ୟୟ କରିବାର ଦକ୍ଷତା ସେ ଲାଭ କରିଛନ୍ତି ପିତା କୃଷ୍ଣମୋହନଙ୍କ ପାରିବାରିକ ଜୀବନରୁ ।

ଶ୍ରଦ୍ଧେୟ ଗୁରୁ କୃଷ୍ଣପ୍ରସାଦ ପଟ୍ଟନାୟକ, ଉପେନ୍ଦ୍ର ନାରାୟଣ ଦାଶଗୁପ୍ତ ଓ ଚନ୍ଦ୍ରମୋହନ ମହାରଣାଙ୍କଠାରୁ ହୃଦୟବତ୍ତା, ଏକାଗ୍ରତା ଓ ଆତ୍ମପ୍ରତିଷ୍ଠା ଶିକ୍ଷା କରିବାରେ ହରିଶ୍ଚନ୍ଦ୍ର ସକ୍ଷମ ହୋଇଥିଲେ ।

ବାଲ୍ୟ ଜୀବନର ଚରମ ଦାରିଦ୍ର୍ୟ, ଆର୍ଥିକ ଅଭାବ ଅନାଟନର ନିଷ୍ଠୁର ଅଗ୍ନିଦାହ ତାଙ୍କର ଅନ୍ତର୍ନିହିତ ମହତ୍ତ୍ୱଗୁଣ ଓ ପ୍ରତିଭାର ବିକାଶରେ ଅନ୍ତରାୟ ସୃଷ୍ଟି କରିପାରି ନଥିଲା । ସେହି ଇଂରେଜ ଶାସନର ଯୁଗରେ ଜଣେ କୁଶଳୀ ଓ ବରିଷ୍ଠ ଅଫିସର ଭାବେ ରେଳ ବିଭାଗର ଗୁରୁଦାୟିତ୍ୱ ବହନ କରି ଆତ୍ମପ୍ରତିଷ୍ଠା ଲାଭ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ସବୁଜ ସାହିତ୍ୟର ଅନ୍ୟତମ ସୁସାହିତ୍ୟିକ ଭାବେ ସେ ଜନପ୍ରିୟ ହୋଇ ପାରିଥିଲେ । ସଂସ୍କୃତ ଓ ଇଂରାଜୀ ଭାଷାରେ ତାଙ୍କର ଗଭୀର ଜ୍ଞାନ ସମସ୍ତଙ୍କୁ ମୁଗ୍ଧ କରେ । ଏଇ ପରିଣତ ବୟସରେ ମଧ୍ୟ ତାଙ୍କର ସ୍ମରଣଶକ୍ତି ଦେଖିଲେ ବିସ୍ମିତ ହେବାକୁ ହୁଏ । ଶ୍ରୀମଦ୍ ଭଗବତ୍ ଗୀତାର ଶ୍ଳୋକ ହେଉ କି କାଳିଦାସଙ୍କର କୁମାରସମ୍ଭବ କାବ୍ୟ ହେଉ; ସେ ନିର୍ଭୁଲ ଭାବରେ ମନରୁ ଆବୃତ୍ତି କରିପାରନ୍ତି ।

ଯେଉଁ ଶ୍ରଦ୍ଧେୟ ଓ ବଦାନ୍ୟ ବ୍ୟକ୍ତିମାନଙ୍କଠାରୁ ସାହାଯ୍ୟ ଓ ସହାନୁଭୂତି ପାଇ ସେ ଜୀବନରେ ଉନ୍ନତିର ଚରମ ସୀମାରେ ପହଞ୍ଚି ପାରିଥିଲେ ସେମାନଙ୍କ ପ୍ରତି ଆଜିପର୍ଯ୍ୟନ୍ତ ଆନ୍ତରିକ କୃତଜ୍ଞତା ସ୍ୱୀକାର କରି ନିଜକୁ ଚିରଋଣୀ ବୋଲି ସେ ଅନୁଭବ କରନ୍ତି । ଜୀବନରେ ସେ

ଯଥେଷ୍ଟ ଅର୍ଥ ଉପାର୍ଜ୍ଜନ କରନ୍ତନ୍ତି ଏବଂ ମୁକ୍ତହସ୍ତରେ ତାହା ବ୍ୟୟ ମଧ୍ୟ କରନ୍ତନ୍ତି । ସାହାଯ୍ୟ ପ୍ରାର୍ଥୀଙ୍କୁ ସେ କେବେ ବିମୁଖ କରନାହାନ୍ତି । ରେଳ ବିଭାଗରେ ଚାକିରିର ପ୍ରାରମ୍ଭରେ କୃପାସିନ୍ଧୁ ମିଶ୍ରଙ୍କଠାରୁ ବଳରେ ହଠାତ୍ ଚିଠିପାଇ ହରିଶ୍ଚନ୍ଦ୍ର ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ସେ ପାଟନା ବିଶ୍ୱ-ବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ କୃପାସିନ୍ଧୁ ଦୁଇବର୍ଷର ଜୁନିୟର୍ ଛାତ୍ର ଥିଲେ । ତାଙ୍କ ସହିତ ଖୁବ୍ ଅନ୍ତରଙ୍ଗତା କିମ୍ବା ଘନିଷ୍ଠତା ନଥିଲା । ଶ୍ୱଶୁରଙ୍କଠାରୁ ଆର୍ଥିକ ସାହାଯ୍ୟର ନିର୍ଭର ପ୍ରତିଶ୍ରୁତି ପାଇ କୃପାସିନ୍ଧୁ ଆଇ. ସି. ଏସ୍. ପଢ଼ିବାକୁ ଇଂଲଣ୍ଡ ଯାଇଥିଲେ । ଦୁର୍ଭାଗ୍ୟ ବଶତଃ ପ୍ରଥମବର୍ଷ ଆଇ. ସି. ଏସ୍. ପରୀକ୍ଷାରେ ସେ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ଏଣେ ଶ୍ୱଶୁରଙ୍କଠାରୁ ଆର୍ଥିକ ସାହାଯ୍ୟ ବନ୍ଦ ହୋଇଗଲା । ଜୀବନରେ ଆଇ. ସି. ଏସ୍.ର ସ୍ୱପ୍ନ ନିଷ୍ଫଳ ହେବାର ଆଶଙ୍କାରେ ସେ ହଠାତ୍ ମ୍ରିୟମାଣ ହୋଇ ପଡ଼ିଲେ । ବିଳାତରେ ଦାରୁଣ ଆର୍ଥିକ ଅନାଟନରେ ପଡ଼ି ସେ ହରିଶ୍ଚନ୍ଦ୍ରଙ୍କଠାରୁ ଆର୍ଥିକ ସାହାଯ୍ୟ ପାଇଁ ଅନୁରୋଧ ଜଣାଇ ଚିଠିଟିଏ ଦେଇଥିଲେ । ସେ ସମୟରେ ଶ୍ରୀଯୁକ୍ତ ବରାଳଙ୍କର ଦରମାର ପରିମାଣ ଥିଲା ମାତ୍ର ସାଢ଼େ ଚାରିଶହ ଟଙ୍କା । ସେହି ସ୍ୱଳ୍ପ ଉପାର୍ଜନରୁ ମାସକୁ ଦୁଇଶହ ଟଙ୍କା, ଦୁଇବର୍ଷ ପାଇଁ ସାହାଯ୍ୟ ପଠାଇ କୃପାସିନ୍ଧୁଙ୍କ ଜୀବନର ସ୍ୱପ୍ନକୁ ସଫଳ କରିବାରେ ହରିଶ୍ଚନ୍ଦ୍ର ଆଗେଇ ଯାଇଥିଲେ । ଫଳରେ ଆଇ. ସି. ଏସ୍. ପାରିକରି କୃପାସିନ୍ଧୁ ହରିଶ୍ଚନ୍ଦ୍ରଙ୍କୁ ବଡ଼ଭାଇ ସ୍ଥାନରେ ଆଜୀବନ କୃତଜ୍ଞତା ପାଶରେ ଆବଦ୍ଧ କରିଥିଲେ ।

କବି ମାନସିଂହଙ୍କ ସହିତ ହରିଶ୍ଚନ୍ଦ୍ରଙ୍କର ସହୃଦୟ ବନ୍ଧୁତା, ଆଜି ଏକ ଅବିସ୍ମରଣୀୟ ଘଟଣା । ସବୁଜ ଯୁଗର ନିଷ୍ଠାପର ତରୁଣ ସାହିତ୍ୟିକ ହିସାବରେ ହରିଶ୍ଚନ୍ଦ୍ର ଥିଲେ ରୋମାଣ୍ଟିକ୍ କବି ମାନସିଂହଙ୍କର କାବ୍ୟକବିତାର କଠୋର ସମାଲୋଚକ । ବିଭିନ୍ନ ପତ୍ରପତ୍ରିକାରେ ସେ 'ଧୂପ' ଭଳି କାବ୍ୟର ତୀବ୍ର ସମାଲୋଚନା କରିବାକୁ ପଶ୍ଚାତ୍ପଦ ହୋଇ ନଥିଲେ । କିନ୍ତୁ ଥରେ ଇଂଲଣ୍ଡରୁ କବି ମାନସିଂହଙ୍କଠାରୁ ଅକସ୍ମାତ୍ ବନ୍ଧୁତାପୂର୍ଣ୍ଣ ଚିଠିଟିଏ ପାଇ ସେ ବିସ୍ମିତ ନ ହୋଇ ରହିପାରିଲେ ନାହିଁ । ଡଃ ମାନସିଂହଙ୍କ ସହିତ ତାଙ୍କର ନିବିଡ଼ ବନ୍ଧୁତା ଥିଲା ଏବଂ ରେଳ ଚାକିରି ଶେଷରେ ହରିଶ୍ଚନ୍ଦ୍ରଙ୍କୁ ଓଡ଼ିଆରେ ସାହିତ୍ୟ ସେବାରେ ତାଙ୍କୁ ସହଯୋଗ କରିବାକୁ ମାନସିଂହ ଅନୁରୋଧ କରିଥିଲେ ।

ହରିଶ୍ଚନ୍ଦ୍ରଙ୍କ ସଫଳ ଜୀବନର ଅନ୍ତରାଳରେ ଥିଲେ ଭୋଳାନାଥ ଦତ୍ତ । ଋଷିପ୍ରତିମ ଭୋଳାନାଥ ବାବୁଙ୍କଠାରୁ ସେ ଶିକ୍ଷାଲାଭ କରିଥିଲେ ଚରିତ୍ରନିଷ୍ଠା ଓ ଆତ୍ମସଂଯମ । 'ମନ୍ତ୍ରଣଂ ବାଦ୍ ପାତେନ ଜୀବନଂ ବାନ୍ଧୁ ଧାରଣାତ୍' ଏବଂ 'ମନ୍ତ୍ରର ସାଧନ କିମ୍ବା ଶରୀର ପାତନ' ଭୋଳାନାଥ ବାବୁଙ୍କର ଜୀବନାଦର୍ଶର ଏହି ମନ୍ତ୍ରରେ ହରିଶ୍ଚନ୍ଦ୍ର ନିଜକୁ ଦୀକ୍ଷିତ କରିଥିଲେ । ପୁଣି ଅସ୍ପୃଶ୍ୟତା ବର୍ଜନ, ନାରୀ ପ୍ରଗତି ଓ ମୁକ୍ତ ବିଚାର ଧାରାର ଉନ୍ମୁକ୍ତ ମାର୍ଗକୁ ହରିଶ୍ଚନ୍ଦ୍ର ଅନୁସରଣ କରିଥିଲେ 'ଭାରତ ସେବକ ସମିତି'ର ସଭ୍ୟ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ଜୀବନାଦର୍ଶରୁ । ବିଖ୍ୟାତ ନାଟ୍ୟକାର ଡି. ଏଲ୍. ରାୟଙ୍କର 'ମେବାର ପତନ' ଆଦି ଐତିହାସିକ ନାଟକ ପଢ଼ି ସେ ଦେଶପ୍ରେମ ଓ ସ୍ୱଦେଶ ପ୍ରୀତିରେ ଉଦ୍‌ବୁଦ୍ଧ ହୋଇଥିଲେ ।

ଉତ୍ତର କାଳରେ ପ୍ରାଚ୍ୟ ଓ ପାଶ୍ଚାତ୍ୟର ଦର୍ଶନଶାସ୍ତ୍ର ଅନୁଶୀଳନ କରି ହରିଶ୍ଚନ୍ଦ୍ର ନିଜ ଜୀବନରେ ସାଧନା ଓ ସିଦ୍ଧିର ସନ୍ଧାନ ପାଇଥିଲେ ସେହି ମହାନ ଗ୍ରନ୍ଥ ଶ୍ରୀମଦ୍ ଭଗବତ୍ ଗୀତା ମଧ୍ୟରେ ଏବଂ ଶ୍ରୀଗୀତାର ନିମ୍ନଲିଖିତ ଶ୍ଳୋକ ହିଁ ତାଙ୍କ ଜୀବନ ଦର୍ଶନର ଭିତ୍ତିଭୂମି କହିଲେ ଭୁଲ ହେବ ନାହିଁ ।

"ଯତଃ ପ୍ରବୃତ୍ତିର୍ଭୂତାନାଂ ଯେନ ସର୍ବମିଦଂତତମ୍ ।
ସ୍ୱକର୍ମଣାତମଭ୍ୟର୍ଚ୍ୟ ସିଦ୍ଧିଂ ବିନ୍ଦନ୍ତି ମାନବ ॥"

—(ମୋକ୍ଷ ଯୋଗ)

ଅର୍ଥାତ୍ ଯେଉଁଥିରୁ ଭୂତସମୂହର ଉତ୍ପତ୍ତି ବା ଜୀବର କର୍ମଚେଷ୍ଟା, ଯେ ଏହି ଚରାଚର ବ୍ରହ୍ମାଣ୍ଡ ବ୍ୟାପି ରହିଛନ୍ତି, ମାନବ ନିଜ କର୍ମଦ୍ୱାରା ତାଙ୍କର ଅର୍ଚ୍ଚନା କରି ସିଦ୍ଧିଲାଭ କରିଥାଏ । ଅନ୍ୟ କଥାରେ କହିଲେ, ସର୍ବାଧାର ଜୀବନ ଦେବତାଙ୍କ ପୂଜାର ଅନନ୍ୟ ଉପକରଣ ହେଉଛି 'ନିଜର ଆଚରିତ କର୍ମ' ଏବଂ ତଦ୍ୱାରା ହିଁ ମାନବ ଚରମ ସିଦ୍ଧିଲାଭ କରେ ।

●

# ବୀଣାବାଦକ ସଙ୍ଗୀତଜ୍ଞ
# ଭକ୍ତବତ୍ସଳ ପାତ୍ର

**ଡଃ ବିଚିତ୍ରାନନ୍ଦ ମହାନ୍ତି**

ଗୀତ, ବାଦ୍ୟ ଓ ନୃତ୍ୟର ଏକତ୍ର ସମାବେଶ ତୌର୍ଯ୍ୟତ୍ରିକ ନାମରେ ଆଖ୍ୟାତ । ଏହାର ପ୍ରତ୍ୟେକଟି ବିଭାଗ ବିଭିନ୍ନ ବିଷୟରେ ସମୃଦ୍ଧ ଏବଂ ଯେକୌଣସି ଗୋଟିଏ ବିଭାଗରେ ପାରଦର୍ଶିତା ଲାଭ କରିବା ମଧ୍ୟ ଦୁଃସାଧ୍ୟ ବ୍ୟାପାର । ଜଣେ ଜଣେ ବ୍ୟକ୍ତି ସାରାଜୀବନ ସାଧନା କଲେ ସୁଦ୍ଧା, ସଙ୍ଗୀତ, ବାଦ୍ୟ କିମ୍ବା ନୃତ୍ୟର ସମସ୍ତ ବିଷୟ ଆୟତ୍ତ କରିପାରନ୍ତି ନାହିଁ । ମାତା ବାକ୍‌ଦେବୀଙ୍କ କରୁଣା ପ୍ରାପ୍ତି ହିଁ ସଙ୍ଗୀତ ସାଧକକୁ ସିଦ୍ଧିର ଅଧିକାରୀ କରିଥାଏ । ବୀଣାବାଦନ ଓ ସଙ୍ଗୀତ ଉଭୟ କ୍ଷେତ୍ରରେ ସିଦ୍ଧି ଲାଭ କରିଥିବା ଶ୍ରୀ ଭକ୍ତବତ୍ସଳ ପାତ୍ର ଉତ୍କଳ ଓ ଉତ୍କଳ ବାହାରେ ଆପଣାର ସଙ୍ଗୀତ ଚର୍ଚ୍ଚା ପାଇଁ ବିଶେଷ ଭାବେ ଆଦୃତ ।

ଓଡ଼ିଶାର ପ୍ରାକୃତିକ ପରିବେଷ୍ଟନୀରେ ସମୃଦ୍ଧ ପାରଳାଖେମୁଣ୍ଡି । ଏକଦା ଖିମିଣ୍ଡି ମଣ୍ଡଳ ନାମରେ ଖ୍ୟାତ ହୋଇଥିବା ଏହି ଅଞ୍ଚଳ ପରବର୍ତ୍ତୀ କାଳରେ ବଡ଼ଖେମୁଣ୍ଡି, ସାନଖେମୁଣ୍ଡି ଓ ପାରଳାଖେମୁଣ୍ଡି ଭାବରେ ତିନିଗୋଟି ଜମିଦାରୀରେ ବିଭକ୍ତ ହୋଇଥିଲା । ଏହି ଜମିଦାର-ମାନେ 'ରାଜା' ଭାବରେ ବ୍ରିଟିଶ ସରକାରଙ୍କ ଦ୍ୱାରା ସ୍ୱୀକୃତ ହୋଇଥିଲେ ହେଁ ପାରଳାଖେମୁଣ୍ଡିର ଶାସକ 'ମହାରାଜା' ପଦବୀରେ ବିଭୂଷିତ ଥିଲେ । ଗଜପତିବଂଶୀୟ ମହାରାଜାମାନଙ୍କ ସୁଶାସନ ଯୋଗେ ପାରଳାଖେମୁଣ୍ଡି ଏକ ସମୃଦ୍ଧ ରାଜ୍ୟ ଭାବରେ ପ୍ରତିଷ୍ଠା ଲାଭ କରିଥିଲା । ରାମସାଗର,

ସୀତାସାଗର ଆଦି ସପ୍ତସାଗରରୁ ଜଳସେଚନର ଉନ୍ନତ ପ୍ରଣାଳୀ ଯୋଗୁଁ ପାରଳା ରାଜ୍ୟରେ କୃଷିର ପ୍ରଭୂତ ଉନ୍ନତି ଘଟିଥିଲା । ପାରଳା ମହାରାଜାଙ୍କ ଉଦ୍ୟମ ଫଳରେ ନୌପଡ଼ାଠାରୁ ଗୁଣୁପୁର ପର୍ଯ୍ୟନ୍ତ ରେଳପଥ ସଂଯୋଗ ହେବା ଦ୍ୱାରା ପାରଳାର ବନଜାତ, କୃଷିଜାତ ଓ ଶିଳ୍ପଶିଳ୍ପ ଆଦି ଦୂରବର୍ତ୍ତୀ ସ୍ଥାନକୁ ପ୍ରେରଣ କରାଯାଇ ପାରିଲା । ଫଳରେ ପାରଳାବାସୀ ପରମ ଆନନ୍ଦରେ କାଳାତିପାତ କରୁଥିଲେ । ପାରଳାର ଧାର୍ମିକ ନରପତିଗଣ ଦେବମନ୍ଦିର ନିର୍ମାଣ ଦେବପୂଜା ଓ ସଙ୍ଗୀତ ସେବାର ବ୍ୟବସ୍ଥା ଘଟାଇଥିଲେ ।

ପାରଳାର ରାଜନ୍ୟମଣ୍ଡଳୀଙ୍କ ପୃଷ୍ଠପୋଷକତା ଯୋଗୁଁ ପାରଳାର ରାଜଦରବାର, ବହୁ ପଣ୍ଡିତ, କବି, କଳାକାର, ନାଟ୍ୟକାର ଆଦିଙ୍କ ଦ୍ୱାରା ମଣ୍ଡିତ ହୋଇଥିଲା । ପାରଳାର ମହାରାଜାମାନେ ସ୍ୱୟଂ ସାହିତ୍ୟ ଓ ସଙ୍ଗୀତ ଚର୍ଚ୍ଚା କରୁଥିବାର ନିଦର୍ଶନ ସ୍ୱରୂପ ଗଜପତି ପ୍ରେସ୍‌ରୁ ମୁଦ୍ରିତ ଓ ପ୍ରକାଶିତ ଅନେକ ପୁସ୍ତକ ଅଦ୍ୟାବଧି ଦେଖିବାକୁ ମିଳିଥାଏ । ପାରଳାରେ କବି କଳହଂସ ଗୋପାଳକୃଷ୍ଣ, ଗୌରହରି ପରିଚ୍ଛା ଆଦି କବିମାନେ ଯେପରି ସୁଖ୍ୟାତି ଅର୍ଜନ କରିଥିଲେ ଅନ୍ଧ ଅପନ୍ନା ପାଣିଗ୍ରାହୀଙ୍କ ପରି ସୁଗାୟକମାନେ ମଧ୍ୟ ସେହିପରି ପ୍ରସିଦ୍ଧି ଲାଭ କରିଥିଲେ । ପଦ୍ମଶ୍ରୀ ସତ୍ୟ-ନାରାୟଣ ରାଜଗୁରୁଙ୍କ ପରି ବିଦ୍ୱାନ ଗବେଷକ ଓ ମଞ୍ଜୁଶ୍ରୀ ସତ୍ୟନାରାୟଣ ପଣ୍ଡାଙ୍କ ପରି କବି ନାଟ୍ୟକାର ନିର୍ଦ୍ଦେଶକଙ୍କ ପାଇଁ ଉତ୍କଳ ଜନନୀ ଗର୍ବିତ ପଦ୍ମନାଭ ରଙ୍ଗାଳୟ ପରି ରଙ୍ଗମଞ୍ଚ, ଉତ୍କଳ ହିତୈଷିଣୀ ସମାଜ ପରି ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ପ୍ରତିଷ୍ଠା ଯୋଗୁ ପାରଳାଖେମୁଣ୍ଡି ଓଡ଼ିଶାରେ ଏକ ସ୍ୱତନ୍ତ୍ର ଆସନ ଲାଭ କରିଥିଲା । ଛିନ୍ନ ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ୧୯୧୪ ମସିହାରେ ପାରଳାଠାରେ ଉତ୍କଳ ସମ୍ମିଳନୀର ଅଧିବେଶନ ଓ ପାରଳାର ପୁଣ୍ୟଶ୍ଳୋକ ଗଜପତି କୃଷ୍ଣଚନ୍ଦ୍ର ନାରାୟଣଙ୍କ ଅଧିନାୟକତ୍ୱରେ ଆନ୍ଦୋଳନ ପାରଳାକୁ ଅଗ୍ରଣୀ ଭୂମିକା ନେବା ଦିଗରେ ଅନୁକୂଳ ହୋଇଥିଲା ।

ଉତ୍କଳ ଜନନୀର ସମ୍ମାନ ରକ୍ଷା ପାଇଁ ତାହାର ବୀରପୁତ୍ର କୃଷ୍ଣଚନ୍ଦ୍ର ଗଜପତିଙ୍କର ଟେମ୍ସ ନଦୀ କୂଳରେ ବିଳାତର ଗୋଲ୍‌ଟେବୁଲ୍ ସମ୍ମିଳନୀରେ ମସି ଅସୀ ଓ ବାକ୍‌ଚାତୁରୀ ବଳରେ ଯେଉଁ ଯୁଦ୍ଧ ତାହା କାଳକାଳ ପାଇଁ ପ୍ରତ୍ୟେକ ଉତ୍କଳୀୟର ହୃଦୟ ପଟରେ ସ୍ମରଣୀୟ ରହିବ ।

ଏହିପରି ସଂଗୀତପ୍ରସୂ, କବିପ୍ରସୂ ଦେବଭୂମି ପାରଳାଖେମୁଣ୍ଡିର ଧୂଳିକଣା ପବିତ୍ର ଓ ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ଏହା ଏକ ତୀର୍ଥକ୍ଷେତ୍ର । ସେହି ପାରଳାର କରଣ ସାହିରେ ୧୯୧୩ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୧୯ ତାରିଖରେ ଏକ କାୟସ୍ଥ ପରିବାରରେ ଜନ୍ମଗ୍ରହଣ କରିଥିଲେ ଭକ୍ତବତ୍ସଳ ପାତ୍ର । ତାହାଙ୍କ ପିତା ସ୍ୱର୍ଗତ ଚୈତନ୍ୟ ପାତ୍ର ଥିଲେ ଜଣେ ବିଶିଷ୍ଟ ସଂଗୀତଜ୍ଞ । ପାରଳାର ସଂସ୍କୃତ ବିଦ୍ୟାଳୟରେ ବିଦ୍ୟାଶିକ୍ଷା କରିବା ସଙ୍ଗେ ସଙ୍ଗେ ପିତାଙ୍କଠାରୁ ତାଳଶାସ୍ତ୍ର ଶିକ୍ଷା କରୁଥିଲେ ।

ପାରଳାର ରାଜଦରବାର ବା ରାଜ ସମସ୍ଥାନରେ ସେତେବେଳେ କଣ୍ଠସଂଗୀତ ପଟୁ ପଣ୍ଡିତ ପ୍ରହରାଜ ସୂରନାରାୟଣ ଓ ବୀଣାବାଦକ ପଣ୍ଡିତ ବୃଚ୍ୟନ୍ନା ନରସିଂହମ୍ ପାନ୍ତୁଲୁ ଆଦି ରହିଥିଲେ । ଭକ୍ତବତ୍ସଳ ଏହି ଉଭୟ ଗୁରୁଙ୍କଠାରୁ କଣ୍ଠସଂଗୀତ ଓ ବୀଣାବାଦନ ଶିକ୍ଷା କରିଥିଲେ ।

ବ୍ରହ୍ମପୁରଠାରୁ ପାରଳାଖେମୁଣ୍ଡି ରାସ୍ତାରେ ବିଦ୍ୟମାନ ମଞ୍ଜୁଷା-ଗଡ଼ । ଏହାକୁ କବିମାନେ ଉତ୍କଳର ମୁକୁଟ ଭାବରେ ବର୍ଣ୍ଣନା କରିଛନ୍ତି । ମଞ୍ଜୁଷାର ଶ୍ରୀ ଶ୍ରୀନିବାସ ରାଜମଣି ରାଜଦେବ ଥିଲେ ଜଣେ ଗୁଣଗ୍ରାହୀ ଓ ବିଦ୍ୱୋତ୍ସାହୀ ବ୍ୟକ୍ତି । ତାହାଙ୍କ ରାଜଦରବାର ମଧ୍ୟ ବହୁ ପଣ୍ଡିତ କବି, କଳାକାରଙ୍କ ଦ୍ୱାରା ସୁଶୋଭିତ ଥିଲା । ପାରଳାରୁ ଆଗତ ପଣ୍ଡିତ ଓ କବିମାନେ ଏଠାରେ ପରୀକ୍ଷିତ ଓ ସମାଦୃତ ହେଉଥିଲେ । ଆଜି ଏହି ମଞ୍ଜୁଷାଗଡ଼ ଶ୍ରୀହୀନ । ମଞ୍ଜୁଷାର ଅଦୂରରେ ମହେନ୍ଦ୍ରଗିରି । ମହେନ୍ଦ୍ର-ଗିରିରେ ଯୁଧିଷ୍ଠିର, କୁନ୍ତୀଦେବୀ ଓ ଭୀମଙ୍କ ମନ୍ଦିର ଥିବା ସହିତ ପୀଠି ମଞ୍ଜୁଷାରେ ଦ୍ରୌପଦୀଙ୍କ ମନ୍ଦିର ରହିଛି । ସାରଳା ମହାଭାରତ ବର୍ଣ୍ଣିତ ଦ୍ରୌପଦୀ କାଳିକାଙ୍କ ଅବତାର ଓ ତାହାଙ୍କ ଖର୍ପରରୁ ଯୁଧିଷ୍ଠିରଙ୍କ ବ୍ୟତୀତ କେହି ଗ୍ରହଣ କରିପାରିବେ ନାହିଁ ବୋଲି ଥିବା ଉକ୍ତି ଏଠାରେ ରୂପାୟିତ ହୋଇଛି ଓ ଏହି ମଞ୍ଜୁଷାଭୂମି ଏବେ ଆନ୍ଧ୍ର ରାଜ୍ୟରେ ରହିଥିଲେ ବି ଓଡ଼ିଶାର ସାହିତ୍ୟ ସଂସ୍କୃତିର ବାର୍ତ୍ତାବହ ହୋଇ ରହିଅଛି ।

ମଞ୍ଜୁଷାର ବ୍ରହ୍ମଉତ୍ସବ ଉପଲକ୍ଷେ ରାଜାସାହେବଙ୍କ ଦ୍ୱାରା ଆହୂତ ସଙ୍ଗୀତ ସଭାରେ ୧୯୨୮ ଖ୍ରୀଷ୍ଟାବ୍ଦରେ ଭକ୍ତବତ୍ସଳ ଯୋଗଦାନ କରିଥିଲେ । ବଡ଼ଖେମୁଣ୍ଡି ନିବାସୀ ବିଶିଷ୍ଟ ମୃଦଙ୍ଗବାଦକ ଶ୍ରୀ କୃତ୍ତିବାସ ପଣ୍ଡାଙ୍କୁ ପ୍ରତିଯୋଗିତାରେ ପରାଜିତ କରି ମଞ୍ଜୁଷାଧୀଶ୍ୱର ଶ୍ରୀନିବାସ ରାଜମଣି

ଗଜପତିଦେବଙ୍କଠାରୁ ପାଞ୍ଚଶତ ମୁଦ୍ରା ଓ ସିଂହମସ୍ତକ ଅଙ୍କିତ ଦୁଇଟି ସୁନାଖଡ଼ୁ ପୁରସ୍କାର ସ୍ୱରୂପ ଲାଭ କଲେ ।

ଦଶବର୍ଷ ବୟସରୁ ଭକ୍ତବତ୍ସଳଙ୍କ ପାରଳାଖେମୁଣ୍ଡିରେ ନଗର ସଂକୀର୍ତ୍ତନରେ ଅଂଶଗ୍ରହଣ ଓ ପରବର୍ତ୍ତୀ କାଳରେ ରାଜଦରବାରରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ମନୋରଞ୍ଜନ ପାଇଁ ବୀଣାବାଦନ କରୁଥିବା ଯୋଗୁଁ ସେ ଏ ଦିଗରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ ଏବଂ ସେହି ଅଭ୍ୟାସ ହିଁ ତାଙ୍କୁ ବିଜୟଶ୍ରୀକା ବିଭୂଷିତ କରିଥିଲା ।

୧୯୩୦ ଖ୍ରୀଷ୍ଟାବ୍ଦରେ ବ୍ରହ୍ମପୁରରେ ଆୟୋଜିତ "ନିଖିଳ ଉତ୍କଳ ସଙ୍ଗୀତ ସଭା"ରେ ଯୋଗ ଦେଇ ଭକ୍ତବତ୍ସଳ ଆପଣାର ଅସାଧାରଣ ସଙ୍ଗୀତ ପ୍ରତିଭାର ପରିଚୟ ଦେଇଥିଲେ । ସେହି ସଙ୍ଗୀତ ସଭାରେ ମୁଖ୍ୟ-ଅତିଥି ଥିଲେ ବିଜୟନଗର ସଙ୍ଗୀତ କଲେଜର ତଦାନୀନ୍ତନ ଅଧ୍ୟକ୍ଷ ଓ ତେଲୁଗୁ 'ହରିକଥା'ର ସ୍ରଷ୍ଟା ସ୍ୱର୍ଗତ ନାରାୟଣ ଦାସୁ । ବୀଣାବାଦକ ଶ୍ରୀ ଭକ୍ତବତ୍ସଳ ପାତ୍ରଙ୍କ ସଙ୍ଗୀତରେ ପରିତୋଷ ଲାଭକରି ଦାସୁ ମହାଶୟ ଭକ୍ତବତ୍ସଳଙ୍କ ଗଳାରେ ଲମ୍ବାଇ ଦେଲେ ସ୍ୱର୍ଣ୍ଣପଦକ । ଏହି ସମ୍ମାନ ତାଙ୍କୁ ଭବିଷ୍ୟତ ପାଇଁ ପ୍ରେରଣା ଯୋଗାଇଥିଲା ।

୧୯୩୪ ମସିହା । କାକିନଡ଼ାଠାରେ ଆହୂତ ଏକ ସଙ୍ଗୀତ ସଭାରେ ଯୋଗଦାନ ଭକ୍ତବତ୍ସଳଙ୍କ ଜୀବନର ଏକ ବିଶିଷ୍ଟ ଘଟଣା । ଉତ୍କୃଷ୍ଟ ଧରଣର ସଙ୍ଗୀତଜ୍ଞ ନ ହେଲେ କେହି ଏପରି ସଙ୍ଗୀତ ସଭାରେ ଅଂଶ-ଗ୍ରହଣ କରିପାରନ୍ତି ନାହିଁ । ଶତ ଶତ ବିଶିଷ୍ଟ ସଙ୍ଗୀତଜ୍ଞ ଓ ସଙ୍ଗୀତପ୍ରେମୀଙ୍କ ଉପସ୍ଥିତିରେ ଏହି ବିରାଟ ସମାବେଶରେ ତ୍ୟାଗରାଜଙ୍କ ରଚିତ ସଙ୍ଗୀତ "ସୌମିତ୍ରୀ ଭାଗ୍ୟମେ ଭାଗ୍ୟାମୁ ମାନାସା" ଅତି ରସାପ୍ଲୁତ ଭାବରେ ଗାନକରି ସମସ୍ତଙ୍କର ପ୍ରଶଂସାଭାଜନ ହୋଇଥିଲେ ।

ଆନ୍ଧ୍ର ପ୍ରଦେଶର ବଇଲା ଗାଁ । ଦାକ୍ଷିଣାତ୍ୟରୁ ଆଗତ ମର୍ଦ୍ଦଳବାଦକ କନ୍ନାଡ଼ ଆପନ୍ନା ଆପଣାର ବଡ଼ିମା ପ୍ରକାଶ କରୁଥିଲେ । ସେତେବେଳେ ସେହି ସ୍ଥାନରେ ଭକ୍ତବତ୍ସଳ ଉପସ୍ଥିତ ଥିଲେ । ସେ ତତ୍‌କ୍ଷଣାତ୍ ଏହି ଆତ୍ମଗର୍ବୀ ବାଦ୍ୟକଙ୍କ ଆହ୍ୱାନ ଗ୍ରହଣ କଲେ । ପ୍ରତିଯୋଗିତା ଆରମ୍ଭ

ହେଲା । ସାତଟି ଅଙ୍ଗ ବ୍ୟବହାର କରି ଗୋଟିଏ ପଲ୍ଲବୀ ଗାନ କଲେ ଭକ୍ତ । ତାଙ୍କ ସଙ୍ଗେ ତାଳସଙ୍ଗତ କରିବା କନ୍ନାଡ଼ଙ୍କ ପକ୍ଷେ ସମ୍ଭବ ନ ହେବାରୁ ଶେଷକୁ ନିରୁପାୟ ହୋଇ ହାର୍ ମାନିଲେ ।

୧୯୪୭ ମସିହା । ପୁରୀଠାରେ ଆୟୋଜିତ ହୋଇଥାଏ ଏକ ସଙ୍ଗୀତ ସଭା ଓ ତହିଁରେ ମୁଖ୍ୟ ପ୍ରବକ୍ତା ଥିଲେ ପ୍ରସିଦ୍ଧ ତବଲାବାଦକ ଜ୍ଞାନପ୍ରକାଶ ଘୋଷ । ଭକ୍ତବତ୍ସଳଙ୍କ ବୀଣାବାଦନରେ ଶ୍ରୀଯୁକ୍ତ ଘୋଷ ଏପରି ବିଭୋର ହୋଇଗଲେ ଯେ ପାଠଙ୍କ ନିମନ୍ତେ ନିର୍ଦ୍ଦିଷ୍ଟ ସମୟ କେତେବେଳୁ ଅତିକ୍ରାନ୍ତ ହେଲାଣି ସେକଥା ଆଉ ତାଙ୍କ ମନରେ ନଥିଲା । ଶେଷକୁ ଏପରି ହେଲା ଯେ ସଭାର ଅନ୍ୟାନ୍ୟ କାର୍ଯ୍ୟକ୍ରମ ବାତିଲ କରି କେବଳ ଭକ୍ତବତ୍ସଳଙ୍କ ବୀଣାବାଦନ ହିଁ ଚାଲୁ ରହିଲା ।

ସଙ୍ଗୀତଜ୍ଞ ଭକ୍ତବତ୍ସଳ କର୍ଣ୍ଣାଟକୀ ସଙ୍ଗୀତ ପଦ୍ଧତିର ଜଣେ ନିଷ୍ଠାପର ସାଧକ । ୧୯୪୮ ଖ୍ରୀଷ୍ଟାବ୍ଦରେ କଟକଠାରେ ଆକାଶବାଣୀ କେନ୍ଦ୍ର ଖୋଲାଗଲା । କର୍ଣ୍ଣାଟକୀ ସଙ୍ଗୀତର ଅଲ୍‌ଇଣ୍ଡିଆ ବୋର୍ଡ ସଭ୍ୟବୃନ୍ଦ ତାଙ୍କୁ କଟକ କେନ୍ଦ୍ରର ଜଣେ ସୁଯୋଗ୍ୟ ବୀଣାବାଦକ ଭାବେ ସ୍ୱୀକୃତି ପ୍ରଦାନ କରିବାରୁ ସେହିକାଳରୁ ସେ କଟକ ଆକାଶବାଣୀ କେନ୍ଦ୍ରରୁ ନିରବଚ୍ଛିନ୍ନ ଶ୍ରୋତାମାନଙ୍କୁ ସୁମଧୁର ବୀଣାର ଝଙ୍କାର ଶୁଣାଇ ଆସୁଛନ୍ତି ।

୧୯୫୪ ଖ୍ରୀଷ୍ଟାବ୍ଦରେ ଜନ୍ମସ୍ଥାନ ପାରଳାଖେମୁଣ୍ଡିରେ ପ୍ରତିଷ୍ଠିତ ଓଡ଼ିଶାର ସର୍ବ ପୁରାତନ ସାହିତ୍ୟ-ସଂସ୍କୃତି ଅନୁଷ୍ଠାନ 'ଉତ୍କଳ ହିତୈଷିଣୀ ସମାଜ' ପକ୍ଷରୁ ପରିଚାଳିତ ସଙ୍ଗୀତ ବିଦ୍ୟାଳୟରେ ଶିକ୍ଷକଭାବେ ଯୋଗଦେଇ ୧୯୫୭ ସାଲରେ ସେହି ବିଦ୍ୟାଳୟର ଅଧ୍ୟକ୍ଷ ଭାବେ କାର୍ଯ୍ୟ କଲେ ।

୧୯୫୭ ମସିହାରେ ଦିଲ୍ଲୀ ସାଧାରଣତନ୍ତ୍ର ଦିବସ ପରେଡ୍‌ରେ ଯୋଗଦେବା ନିମନ୍ତେ 'ଉତ୍କଳ ନୃତ୍ୟ ସଙ୍ଗୀତ ନାଟ୍ୟକଳା ପରିଷଦ' ତରଫରୁ ଗଠିତ କମିଟି ନିମନ୍ତେ ତାଙ୍କୁ ଏକ ସଭ୍ୟଭାବେ ମନୋନୀତ କରା-ଯାଇଥିଲା । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ, ଉତ୍କଳ ସଙ୍ଗୀତ ସମାଜ, ଓଡ଼ିଶା ମାଧ୍ୟମିକ ଶିକ୍ଷା ବୋର୍ଡ ପ୍ରଭୃତି ବିଭିନ୍ନ ଅନୁଷ୍ଠାନମାନଙ୍କ ଦ୍ୱାରା ସେ ସଙ୍ଗୀତ ପରୀକ୍ଷକ ଭାବରେ ନିଯୁକ୍ତ ପାଇଛନ୍ତି ।

ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳରେ ଆକାଶବାଣୀ ଓ ଦୂରଦର୍ଶନ ମାଧ୍ୟମରେ ଭକ୍ତବତ୍ସଳ ଜଣେ ଜନପ୍ରିୟ ବୀଣାବାଦକ । ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ ପୌରୋହିତ୍ୟରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ୧୯୯୦ ମସିହାରେ ଶ୍ରୀଯୁକ୍ତ ପାତ୍ରଙ୍କୁ ସମ୍ମାନିତ କରିଛନ୍ତି । ସାଧକର ସାଧନା ନୀରବରେ ସାଧିତ ହେଲେ ବି ତାହାଙ୍କ ପ୍ରତିଭା ପୁଷ୍ପର ମହକରେ ଦିଗନ୍ତ ଆମୋଦିତ ହୁଏ ଏବଂ ଗୁଣଗ୍ରାହୀ ଦେଶବାସୀ ପୂଜ୍ୟପୂଜା ନିମନ୍ତେ ଆଦୃତ ହୋଇଥାନ୍ତି ।

ଆଜି ଉତ୍କଳ ପାଠକ ସଂସଦ ଏହି ଅବସରରେ ସେହି ପ୍ରତିଭାବାନ ସଙ୍ଗୀତ ସାଧକଙ୍କୁ ଅଭିନନ୍ଦନ ଜଣାଇ ଆପଣାକୁ ଗୌରବାନ୍ୱିତ ମନେ କରୁଛି ।



# ନୃତ୍ୟଗୁରୁ ମାୟାଧର ରାଉତ :
# ଏକ ମୂଲ୍ୟାୟନ

ଅଧ୍ୟାପକ ତୀର୍ଥାନନ୍ଦ ମିଶ୍ର

॥ ଏକ ॥

ଅନାମିକା ଫୁଲଟିଏ ଲତା ଉହାଡ଼ରେ ସମସ୍ତଙ୍କ ଦୃଷ୍ଟିର ଅନ୍ତରାଳରେ ଆତ୍ମପ୍ରକାଶ କରିଥିଲେ ମଧ୍ୟ ତା'ର ସୁବାସ ଯେପରି ଚାରିଆଡ଼େ ପ୍ରକାଶ କରିଦିଏ, ସେହିପରି ମହତ୍ ଲୋକଙ୍କ ପ୍ରତିଭା ସେମାନଙ୍କ ପ୍ରକଟନ ସମ୍ବାଦକୁ ଚାରିଆଡ଼େ ପ୍ରଚାର କରିଦିଏ । ନୃତ୍ୟ ତଥା ସଙ୍ଗୀତ କ୍ଷେତ୍ରରେ ସେହିପରି ଏକ ପ୍ରତିଷ୍ଠିତ ପ୍ରତିଭା ହେଉଛନ୍ତି ନୃତ୍ୟଗୁରୁ ମାୟାଧର ରାଉତ । ସେ ୧୯୩୩ ମସିହା ଜୁଲାଇ ମାସ ଛଅ ତାରିଖ ଦିନ କଟକ ଜିଲ୍ଲା ଅନ୍ତର୍ଗତ ବାଙ୍କୀ ଥାନାର କଳପଡ଼ିଙ୍ଗ ଗ୍ରାମରେ ଜନ୍ମ ହୋଇଥିଲେ । ତାଙ୍କ ଗ୍ରାମରେ 'ମଥୁରା ମଙ୍ଗଳ'ର କୃଷ୍ଣଲୀଳା ଲାଗି ଏକ ନାଟ୍ୟ ଦଳ ଥିବାରୁ ସେ ବାଲ୍ୟାବସ୍ଥାରୁ ନୃତ୍ୟ ଓ ଅଭିନୟ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ । ତାଙ୍କ ଜେଜେବାପା ସ୍ୱର୍ଗୀୟ ସନାତନ ରାଉତ ଏହି ନାଟ୍ୟ ଦଳର ପରିଚାଳନା ଦାୟିତ୍ୱ ତୁଲାଇବା ସଙ୍ଗେ ସଙ୍ଗେ ସେଥିରେ ଅଭିନୟ ମଧ୍ୟ କରୁଥିଲେ । ତାଙ୍କ ବଡ଼ଭାଇ ହରିହର ରାଉତ ମଧ୍ୟ ଏଥିରେ କୃଷ୍ଣ ଭୂମିକାରେ ଅଭିନୟ କରୁଥିଲେ । ମାତ୍ର କ୍ରମେ ଯାତ୍ରା ଦଳଟି ଭାଙ୍ଗି ପଡ଼ିଲା ଓ ଏହି ଯାତ୍ରା ଦଳ ପାଇଁ ତାଙ୍କ ପରିବାରକୁ ଘୋର ଆର୍ଥିକ ସଙ୍କଟର ସମ୍ମୁଖୀନ ହେବାକୁ ପଡ଼ିଲା । ମାୟାଧରଙ୍କ ପରିବାର ସହିତ କବିଚନ୍ଦ୍ର କାଳୀଚରଣଙ୍କ ସୁସମ୍ପର୍କ ଥିଲା । ଫଳରେ ତାଙ୍କ ବଡ଼ଭାଇ ହରିହର କବିଚନ୍ଦ୍ରଙ୍କ 'ଶ୍ରୀ ସାକ୍ଷୀଗୋପାଳ

ନାଟ୍ୟ ସଙ୍ଘ'ରେ ରାଧା ଭୂମିକାରେ ଅଭିନୟ କରିବାର ସୁଯୋଗ ପାଇଲେ ଓ କବିଚନ୍ଦ୍ର କାଳୀଚରଣ ମାୟାଧରଙ୍କ ପରିବାରର ଖର୍ଚ୍ଚ ପାଇଁ ଗାଇଁଅଁଙ୍ଗ ଗ୍ରାମରେ ଥିବା ନିଜ ଜମିକୁ ଚାଷକରିବା ପାଇଁ ଦେଇଥିଲେ ।

ମାୟାଧର ଦ୍ୱିତୀୟ ଶ୍ରେଣୀରେ ପାଠପଢ଼ିବା ବେଳକୁ ପ୍ରାଚୀନ ଛାନ୍ଦବନ୍ଧ ଗାଇବା ଶିଖିଯାଇଥିଲେ । ଥରେ 'ମଥୁରାମଙ୍ଗଳ'ର 'ଦାଣ୍ଡରେ ଶୁଭିଲା ରାମକୃଷ୍ଣ ବେଣୁନାଦ' ଏହି ଗୀତଟି ଗାଇ କାଳୀଚରଣଙ୍କ ଦୃଷ୍ଟି-ଆକର୍ଷଣ କରିଥିଲେ । କାଳୀଚରଣ ମାୟାଧରଙ୍କ ସୁଲଳିତ କଣ୍ଠସ୍ୱର ଶୁଣି ତାଙ୍କ ପିତାଙ୍କୁ ପରାମର୍ଶ ଦେଇଥିଲେ ମାୟାଧରଙ୍କୁ ରାସଦଳରେ ସାମିଲ କରିଦେବାକୁ । ଏହାବ୍ୟତୀତ ନିଜ ଗାଆଁ କିମ୍ବା ପାଖ ଗାଆଁ ଯେଉଁଠି ଯେତେ ଯାତ୍ରା ହେଉଥିଲା, ମାୟାଧର ସେ ସମସ୍ତ ଦେଖିବାକୁ ଯାଉଥିଲେ ଓ ତାଙ୍କର ଅଦ୍ଭୁତ ଅନୁକରଣ ଶକ୍ତି ହେତୁ ସେ ସମସ୍ତ ଅଭିନୟମାନଙ୍କୁ ସହଜରେ ଆୟତ୍ତ କରି ନେଉଥିଲେ । ସାଙ୍ଗ ପିଲାମାନଙ୍କୁ ନିର୍ଦ୍ଦେଶନା ଦେଇ ସେ ପିଲାବେଳୁ କୌତୁକରେ ନାଟକ ପରିବେଷଣ ମଧ୍ୟ ଆରମ୍ଭ କରି ଦେଉଥିଲେ । ତାଙ୍କର ଏହି ନାଟକ ପ୍ରୀତିକୁ କେହି ଶୁଭଦୃଷ୍ଟିରେ ଦେଖୁଥିଲାବେଳେ ଆଉ କେହି ବା ନାସିକା କୁଞ୍ଚନ କରୁଥିଲେ । ସେ ସମୟରେ ତାଙ୍କ ଭାଇ କଟକରୁ ପଠାଇଥିବା ଏକ ପୁଲିସ୍ ପୋଷାକ ତାଙ୍କ ଅଭିନୟ କଳାକୁ ଅଧିକ ଜାଗ୍ରତ କରିଥିଲା ଏବଂ ମାୟାଧର ସେତିକିବେଳୁ ରଙ୍ଗୀନ କାଗଜରେ ଅଠା ଲଗାଇ ମୁକୁଟ ଓ ଗହଣା ପ୍ରସ୍ତୁତ କରି ନିଜେ ପିନ୍ଧି ଓ ନିଜ ସାଥୀମାନଙ୍କୁ ପିନ୍ଧାଇ ମିଛ ନାଟକ ଅଭିନୟ ଆରମ୍ଭ କରିଦେଇଥିଲେ ।

କ୍ରମେ ପିତାଙ୍କ ପରାମର୍ଶ ନେଇ ମାୟାଧର ୧୯୪୧ ମସିହାରେ କାଳୀବାବୁଙ୍କ ଯାତ୍ରା ଦଳରେ ଯୋଗ ଦେଲେ । ମାତ୍ର ସମୟର ଚାହିଦାର ସାମ୍ନା କରି ନ ପାରି କାଳୀବାବୁଙ୍କ ରାସଦଳ ତିଷ୍ଠି ପାରିଲା ନାହିଁ । କାଳୀବାବୁ କିନ୍ତୁ ଏଥିରେ ହତୋତ୍ସାହ ହୋଇ ଉଠିଲେ ନାହିଁ । ସେ ରାସ ଦଳକୁ ଭାଙ୍ଗି ଉନ୍ନତ ମାନର ସାମାଜିକ ନାଟକ କରିବାକୁ ଇଚ୍ଛାପୋଷଣ କଲେ । କେବଳ ମାତ୍ର 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ରେ ମଧୁମଙ୍ଗଳ ଭୂମିକାରେ ଶ୍ରୀରାମଚନ୍ଦ୍ର ଭବନଠାରେ ଅଭିନୟ କରି ମାୟାଧର ପୁଣି ନିଜ ଗାଆଁକୁ ଫେରିଆସିଲେ । ମାତ୍ର ଥରେ ଯେ ଅଭିନୟର ରଙ୍ଗୀନ୍ ଆକାଶରେ

ଉଡ଼ ବୁଲିବାକୁ ଆରମ୍ଭ କରିଛୁ, ସେ ଗାଆଁରେ କଦାପି ସ୍ଥିର ହୋଇ ବସି ପାରିବ ନାହିଁ । ପୁନବାର ମାୟାଧର କଟକ ଗ୍ଲଲି ଆସିଲେ । ସେତେବେଳକୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ହେତୁ ନାଟକ ପ୍ରଦର୍ଶନ ପ୍ରାୟ ବନ୍ଦ ହୋଇ ଯାଇଥିଲା । କାଳୀବାବୁଙ୍କ ନାଟକର ଅଭିନେତାମାନେ ତାଙ୍କ ପ୍ରେସ୍‌ରେ କାମ କରୁଥିଲେ । ମାୟାଧରଙ୍କ ବଡ଼ଭାଇ ଅକ୍ଷର ସଜାଉ ଥିଲେ । ମାୟାଧର ନିଜେ କାଗଜ ଭାଙ୍ଗୁଥିଲେ । ମାତ୍ର ଏହି ବିଶ୍ୱଯୁଦ୍ଧ ନାଟକକୁ ପୂର୍ଣ୍ଣ ନୀରବ କରିପାରି ନ ଥିଲା । ଛାଉଣିଆରେ ଥିବା ସୈନ୍ୟମାନଙ୍କ ମନୋରଞ୍ଜନ ଲାଗି କିଛି କିଛି ନୃତ୍ୟ ଗୀତର ଆବଶ୍ୟକତା ପଡ଼ୁଥିଲା । ଏଥିପାଇଁ କବିଚନ୍ଦ୍ର କାଳୀଚରଣଙ୍କୁ ହିଁ ପ୍ରଥମେ ଲୋଡ଼ା ଯାଉଥିଲା । ଏହା ବ୍ୟତୀତ ଚକ୍ରଧର ମିଶ୍ରଙ୍କ 'କଥାଚକ୍ର' ଟକିଜ୍ ଲାଗି ପୋଷ୍ଟର, ହାଣ୍ଡବିଲ୍ ଓ ପିଲାମାନଙ୍କର ବହିପତ୍ର ଏହି କାଳୀବାବୁଙ୍କ ପ୍ରେସ୍‌ରେ ଛପା ହେଉଥିଲା । ମାୟାଧର ଏହିଥିରେ ନିଯୁକ୍ତ ଥିଲେ । ଏହାର ଅଳ୍ପ କେତେଦିନ ପରେ ଆତ୍ମପ୍ରକାଶ କଲା କାଳୀଚରଣଙ୍କ ବହୁ ଆକାଙ୍କ୍ଷିତ ସ୍ୱପ୍ନ 'ଓଡ଼ିଶା ଥିଏଟର୍ସ' । ବାଙ୍କାବଜାରର ଏକ ଅସ୍ଥାୟୀ ରଙ୍ଗମଞ୍ଚରେ ଏହା ପ୍ରଥମେ ନାଟକ ଅଭିନୟ କରିବା ଆରମ୍ଭ କଲା ।

ବାଳକ ମାୟାଧର କବିଚନ୍ଦ୍ର କାଳୀଚରଣଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ହିଁ ନିଜ କଳାକାର ଜୀବନର ଶୁଭାରମ୍ଭ କରିଥିଲେ । କାଳୀବାବୁଙ୍କ ରୁମ୍‌ରେ ପଙ୍ଖା କରିବା, ପ୍ରତ୍ୟେକ ରୁମ୍‌ରେ ସନ୍ଧ୍ୟାରେ ଲଣ୍ଠନ ସଫାକରି ଜାଳିବା, କାଳୀବାବୁଙ୍କ ପାଇଁ ଗାଧୁଆଘରେ ପାଣିକାଡ଼ି ରଖିବା ଥିଲା ମାୟାଧରଙ୍କ ଭଳି ପିଲାମାନଙ୍କର ଦୈନନ୍ଦିନ କର୍ମ । ପ୍ରତିଦିନ ସନ୍ଧ୍ୟାବେଳେ ତୁଳସୀ ଚଉରାମୂଳେ କୀର୍ତ୍ତନ ଏବଂ ଭୋର ଚାରିଟାରୁ ଗଳାସଧା ତାଙ୍କୁ ଜଣେ ପିଲା କଳାକାରଟିଏ ଗଢ଼ି ତୋଳିବାକୁ ଭିତ୍ତି ପ୍ରସ୍ତୁତ କରୁଥିଲା । ଛଅଟା ବେଳେ ନାଚ ଅଭ୍ୟାସ ଏବଂ ନଅଟାରେ ଡ୍ରାମା ରିହର୍‌ସାଲ୍ କରିବାକୁ ପଡ଼ୁଥିଲା । ମାୟାଧରଙ୍କ ବୟସର ପିଲାମାନେ ସାଧାରଣତଃ ସଖୀଳିକା କରୁଥିଲେ । ଓଡ଼ିଶା ଥିଏଟର୍ସ ସେତେବେଳେ ପ୍ରତିଷ୍ଠାର ଚରମ ଶିଖରରେ ଉପନୀତ ହୋଇଥିଲା । ମାୟାଧର ଓ ତାଙ୍କ ବଡ଼ଭାଇ ସେତେବେଳେ ବାଙ୍କାବଜାରର ଏକ ପେଣ୍ଡାଲ୍ ପାଖ ଘରେ ରହୁଥିଲେ । ମାସକୁ ସେମାନେ ପନ୍ଦରଟଙ୍କା ବେତନ ପାଉଥିଲେ । ସଖୀଳିକାରେ ମାୟାଧର କୃଷ୍ଣ

ଭୂମିକାରେ ଅଭିନୟ କରୁଥିଲେ । ବେଳେ ବେଳେ ବଡ଼ ବଡ଼ ଫାଙ୍କାସବୁ ମାୟାଧରଙ୍କର ମନେ ରହୁ ନ ଥିଲା । ତେଣୁ କାଳୀବାବୁଙ୍କ ବାଉଁଶକାଠି ଚମଡ଼ା ଚପଲରେ ତାଙ୍କୁ ମାଡ଼ ଖାଇବାକୁ ପଡ଼ୁଥିଲା । ବେଳେ ଉପରେ କୋରଡ଼ା ପରି ମାୟାଧରଙ୍କ ଚଗଲା ପ୍ରକୃତି ହେତୁ ସେ ତାଙ୍କ ବଡ଼ଭାଇଙ୍କଠାରୁ ମଧ୍ୟ ମାଡ଼ ଖାଉଥିଲେ ।

କବିଚନ୍ଦ୍ର କାଳୀଚରଣ ନାଟକରେ ନୃତ୍ୟର ପ୍ରଚଳନ କରିଥିଲେ । ତାଙ୍କ 'ଜୟଦେବ' ନାଟକ ଲାଗି ସେ ୧୯୪୩ ମସିହାରେ ପ୍ରଖ୍ୟାତ ମୋହନ ମହାପାତ୍ର ଓ ସିଂହାରି ଶ୍ୟାମସୁନ୍ଦର କରଙ୍କୁ ଅଣାଇ ରଙ୍ଗମଞ୍ଚରେ ମାହାରି ନୃତ୍ୟ ପ୍ରଦର୍ଶନ କରିଥିଲେ । ଏହା ପର ବର୍ଷ ଅର୍ଥାତ୍ ୧୯୪୪ ମସିହାରେ 'ଅନ୍ତର୍ବର୍ତ୍ତୀ ଜଗନ୍ନାଥ' ନାଟକରେ ମାୟାଧର ଓ ତାଙ୍କ ବାଲ୍ୟବନ୍ଧୁ ଗୋପୀକୃଷ୍ଣ ବେହେରା ପ୍ରଥମ କରି ଆଧୁନିକ ରଙ୍ଗମଞ୍ଚରେ ଗୋଟିପୁଅ ନାଚ କରିଥିଲେ । ଏହି ନୃତ୍ୟ ସଙ୍ଗୀତ ପାଇଁ ମାୟାଧର ତାଙ୍କ ବନ୍ଧୁମାନଙ୍କ ସହିତ ଅନେକ ବଙ୍ଗଳା ଚଳଚ୍ଚିତ୍ର ଦେଖୁଥିଲେ । ଏହି ଚଳଚ୍ଚିତ୍ର ଦେଖିବା ତାଙ୍କର ଏକ ନିଶା ହୋଇଯିବାରୁ ଏଥିପାଇଁ ତାଙ୍କୁ ଦଣ୍ଡ ଭୋଗିବାକୁ ପଡ଼ୁଥିଲା । ଏହି ସମୟରେ ମାୟାଧରଙ୍କୁ ଇଂରାଜୀ ଶିଖାଇବା ପାଇଁ ତାଙ୍କ ବଡ଼ଭାଇ ନିଜ ବନ୍ଧୁ ବନମାଳୀ ପଟ୍ଟନାୟକଙ୍କୁ ଅନୁରୋଧ କରିଥିଲେ । ମାତ୍ର ଏହି ଅନାକାଙ୍କ୍ଷିତ ଅନୁଶାସନବଦ୍ଧତା ମାୟାଧରଙ୍କୁ ବିବ୍ରତ କରିଥିଲା । ସେ ତାଙ୍କ ସମଧର୍ମୀ ବନ୍ଧୁମାନଙ୍କ ସହ କଲିକତା ପଳାଇଯିବା ପାଇଁ ମନସ୍ଥ କଲେ । ଶେଷରେ ମାୟାଧର ଅତି ସତର୍କତାର ସହିତ ତାଙ୍କ ବନ୍ଧୁ ଗୋବିନ୍ଦ ସହ କଲିକତା ପଳାଇ ଯାଇଥିଲେ । ମାତ୍ର ଏହି ଯାତ୍ରା ଦୁଇ-ବନ୍ଧୁଙ୍କୁ ଅନେକ ଅସୁବିଧାରେ ପକାଇଥିଲା । ଅର୍ଥାଭାବ ଓ ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାରେ ଅନଭିଜ୍ଞତା, ଶେଷରେ ଦୁଇବନ୍ଧୁଙ୍କୁ ବହୁ ଅସୁବିଧାରେ ପକାଇଥିଲା । ଅଭୁକ୍ତ ଓ ଅର୍ଦ୍ଧଭୁକ୍ତ ରହି ଦୁଇବନ୍ଧୁ କଷ୍ଟେମଷ୍ଟେ କିଛିକାଳ ସମୟ କାଟିଲେ । ମାତ୍ର ଶେଷରେ ଘରକୁ ଆସିବାର ଅନ୍ୟ କୌଣସି ଉପାୟ ନଦେଖି ସେ ସମୟର ଲୋକପ୍ରିୟ ହିନ୍ଦୀ ଚଳଚ୍ଚିତ୍ର 'କିସ୍‌ମତ୍', 'ବସନ୍ତ', 'ଶକୁନ୍ତଳା' ଓ 'ଝୁଲା' ଆଦିର ଗୀତ ଗାଇ କିଛି ପଇସା ରୋଜଗାର କଲେ । କଟକ କାଜିବଜାରର ଜଣେ ଟି. ଟି. ସି.ଙ୍କ ସହାୟତାରେ ଦୁଇବନ୍ଧୁ ପୁଣି ଜନ୍ମ ବାଲୁଗାଁରେ ପହଞ୍ଚିଲେ ।

ବାଲୁଗାଁରୁ ମାୟାଧର ବନ୍ଧୁ ଗୋବିନ୍ଦଙ୍କୁ ଧରି ସେ ସମୟର ନାଟଦଳ 'ଭଗବତୀ ଥିଏଟର୍ସ'ର ମାଲିକ ବଂଶୀଧର ପୃଷ୍ଟିଙ୍କୁ ସାକ୍ଷାତ କରି । ସେତେବେଳେ ତାଙ୍କ ନାଟଦଳ ଭାଙ୍ଗିଯାଇ ଥିବାରୁ ସେ ଏକ ନୂଆ ନାଟଦଳ ଗଠନ କରିବାର ଚିନ୍ତା କରୁଥିଲେ । ସେତେବେଳେ ତାଙ୍କ ଦଳରେ କୃଷ୍ଣ ଭୂମିକାରେ ଅଭିନୟ କରୁଥିଲେ । ବର୍ତ୍ତମାନ କୃଷ୍ଣ ଚିହ୍ନାଳୟର ମାଲିକ କୃଷ୍ଣଚନ୍ଦ୍ର ରଥ । ୧୯୪୪ ବେଳକୁ ଏହି କୃଷ୍ଣ ରଥ କାଳୀବାବୁଙ୍କ ଦଳକୁ ଚାଲି ଆସିଥିଲେ । ସେତେବେଳେ ବଂଶୀଧରବାବୁଙ୍କ ନାଟକ ଦଳରେ ସତ୍ୟନାରାୟଣ ପଣ୍ଡାଙ୍କ 'ବିଜୟ କୁମାର', 'ଭକ୍ତର ଭଗବାନ', 'ବିଲ୍ୱମଙ୍ଗଳ' ଓ 'ଚନ୍ଦ୍ରଧାରା' ପ୍ରଭୃତି ନାଟକ ଅଭିନୀତ ହେଉଥିଲା । ମାୟାଧର ଏ ସମସ୍ତ ନାଟକରେ ବାଳକୃଷ୍ଣ, ପ୍ରଦ୍ୟୁମ୍ନ ଓ ବିଜୟକୁମାର ଭୂମିକାରେ ଅଭିନୟ କରୁଥିଲେ । କ୍ରମେ ମାୟାଧରଙ୍କ ଅଭିନୟର ପ୍ରଶଂସା କଟକର ପଡ଼ିଗଲା । କବିଚନ୍ଦ୍ର କାଳୀଚରଣ ମାୟାଧର ଫେରିଆସି ବଂଶୀଧରବାବୁଙ୍କ ନାଟ୍ୟଦଳରେ ରହିଥିବାର ଜାଣି ତାଙ୍କ ନାମରେ ଏକ ପିଲାଗ୍ରେଫ ମାମଲା ରୁଜୁ କଲେ ଏବଂ ଖବରକାଗଜମାନଙ୍କରେ ଏ ସମ୍ପର୍କିତ ବିଜ୍ଞାପନ ମଧ୍ୟ ଦେଲେ । ପରେ ମାୟାଧର କାଳୀବାବୁଙ୍କ ନିକଟକୁ ଆସିଲେ । ସେତେବେଳେ କାଳୀବାବୁ ସ୍ୱଭାବ ସୁଲଭ ଭଙ୍ଗୀରେ ମାୟାଧରକୁ ଲକ୍ଷ୍ୟ କରି ଗାଇଉଠିଥିଲେ—

"ମାୟାଧର ମାୟା ସାଗର । ଗୁଣ ତ ତୋ'ର ଅପାର ॥
ଯାହା କଲୁ କଲୁ । ଏବେ ଘରକୁ ଚାଲ ॥"

କାଳୀବାବୁଙ୍କ ତାଗିଦାରେ ମାୟାଧର ପୃଷ୍ଟିବାବୁଙ୍କୁ ଛାଡ଼ି ଘରକୁ ଚାଲିଆସିଲେ ମଧ୍ୟ, ପୃଷ୍ଟିବାବୁଙ୍କ ସ୍ନେହମମତା ସେ ଭୁଲିପାରି ନଥିଲେ । ଶ୍ରଦ୍ଧାରେ ପୃଷ୍ଟିବାବୁ ତାଙ୍କୁ ଡାକୁଥିଲେ 'ବୁଲୁ' । ଆସିବାବେଳେ ସେ ମାୟାଧରଙ୍କୁ କିଛି ଟଙ୍କା ଦେଲେ ଓ ବାଣପୁରକୁ ଅତିଶୀଘ୍ର ଆସି ତାଙ୍କ ଦଳରେ ଯୋଗଦେବାକୁ ନିମନ୍ତ୍ରଣ କଲେ । କିଛିଦିନ ପରେ ମାୟାଧର ପୃଷ୍ଟିବାବୁଙ୍କ ଡାକରାରେ ବାଣପୁର ଗଲେ ଓ ଭଗବତୀ ଥିଏଟର୍ସରେ ଅଭିନୟ କଲେ । ମାତ୍ର କ୍ରମେ ବର୍ଷାଦିନ ଆସିବାରୁ ଓ ଥିଏଟର୍ସର ପେଣ୍ଡାଲରେ ପାଣି ଭରିଯିବାରୁ ଆଉ ନାଟକ ମଞ୍ଚସ୍ଥ କରିବା

ସମ୍ଭବ ହୋଇପାରିଲ ନାହିଁ । ପୁଣି ଲୋକଙ୍କର ଅନେକ ପଇସା ବାକି ପଡ଼ିଯିବାରୁ ପୁଷ୍ଟିବାବୁ ଥିଏଟର୍ ବନ୍ଦୀ କରିଦେଇ ତାଙ୍କୁ ଚାଲିଯାଆନ୍ତେ ମାୟାଧରଙ୍କୁ କଟକ ଆସିବାକୁ ପଡ଼ିଲା । ସେତେବେଳେ କାଳୀବାବୁଙ୍କ ଦଳରୁ କେତେକ କଳାକାର ବାହାରି ଆସି ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ନାମରେ ଏକ ନାଟ୍ୟଦଳ ଗଢ଼ିଲେ । ତା'ର ମାଲିକ ଥିଲେ ଶ୍ରୀ ଲିଙ୍ଗରାଜ ନନ୍ଦ । ମାତ୍ର ମାୟାଧର ଏ ଦଳରେ ସାମିଲ ନ ହୋଇ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ର ମ୍ୟାନେଜର ଶ୍ରୀ ବାଉରିବନ୍ଧୁ ମହାନ୍ତିଙ୍କ ଡାକରାରେ ପୁରୀ ଆସି ଅନ୍ନପୂର୍ଣ୍ଣା 'ସି' ଗ୍ରୁପ୍ ନାମକ ନୂଆ ହୋଇ ଗଠିତ ହେବାକୁ ଥିବା ଏକ ନାଟକ ଦଳରେ ଅଭିନୟ କରିବାକୁ ପ୍ରତିଶ୍ରୁତିବଦ୍ଧ ହେଲେ । ମାତ୍ର ଅନ୍ନପୂର୍ଣ୍ଣା 'ସି' ଗ୍ରୁପ୍ ଠିକ୍ ସମୟରେ ଗଢ଼ିଉଠି ନ ପାରିବାରୁ ମାୟାଧରଙ୍କୁ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପରେ ଅଭିନୟ କରିବାକୁ ହେଲା । କାଳୀବାବୁଙ୍କ ଶିଷ୍ୟ ହୋଇଥିବାରୁ ମାୟାଧରଙ୍କ ପ୍ରତି ଦଳର କେତେକଙ୍କର ଈର୍ଷା ତଥା ଅସୂୟାଭାବ ଥିଲା, ତଥାପି ତାଙ୍କର କେହି କିଛି କ୍ଷତି କରି ନଥିଲେ । ଏ ଅନୁଷ୍ଠାନରେ ଶ୍ରେଷ୍ଠ ଭାଇଟିଏ ଭଳି ତାଙ୍କୁ ସ୍ନେହ କରୁଥିଲେ କାର୍ତ୍ତିକ କୁମାର ଘୋଷ । ସେତେବେଳେ ପୁରୀରେ ଚାଲୁଥିବା ନାଟକ 'ବନ୍ଧୁ ମହାନ୍ତି'ରେ କୃଷ୍ଣ ଭୂମିକାରେ ଅଭିନୟ କରୁଥିବା କଳାକାରଟି ଅସୁସ୍ଥ ହୋଇ ପଡ଼ିବାରୁ ମାୟାଧରଙ୍କୁ ସେ ଭୂମିକାରେ ଅବତୀର୍ଣ୍ଣ ହେବାକୁ ପଡ଼ିଥିଲା ଏବଂ ସେ କିଛିଦିନ ପାଇଁ ଏ ଭୂମିକାରେ ସଫଳତାର ସହ ଅଭିନୟ କରିଥିଲେ । ସେ ଅଭିନୟ କରିଥିବା ଏହି ଚରିତ୍ରଟିର ଏକ ଆକର୍ଷଣୀୟ ସଙ୍ଗୀତ ହେଉଛି—

"ବାଟୋଇ ବାଟ ଚାଲନ୍ତରେ ।
କେଉଁ ଦେଶ ତୋ'ର ଘର । କେତେ ଦୂରେ ଗାଆଁ ...
ଜାଣିନି ତା'ର ନାଆଁ ?"

ପରେ ଅନ୍ନପୂର୍ଣ୍ଣା 'ସି' ଗ୍ରୁପ୍ ପାଇଁ ଅଭିନେତା ନିର୍ବାଚନ ଆରମ୍ଭ ହେଲା । ଏହାର ଦାୟିତ୍ୱରେ ଥିଲେ କାର୍ତ୍ତିକକୁମାର ଘୋଷ, ମୋହନ ସୁନ୍ଦରଦେବ ଗୋସ୍ୱାମୀ, ତାଙ୍କର ସୁଯୋଗ୍ୟ ଦାୟାଦ ଗୌର ସୁନ୍ଦରଦେବ ଗୋସ୍ୱାମୀ ଏବଂ ପୁରୀର କେତେକ କଳାପ୍ରେମୀ ବ୍ୟକ୍ତିବୃନ୍ଦ । ମାୟାଧରଙ୍କ

ପ୍ରଭୃତି ପ୍ରଥମେ କନ୍ଦ୍ରବ ରଖିଥିବା, ମାତ୍ର ପରେ ତାଙ୍କ ସୁଲଳିତ କଣ୍ଠରେ ମୁଗ୍ଧ ହୋଇ ପଡ଼ିଥିବା ମୋହନସୁନ୍ଦର ଦେବ ଗୋସ୍ୱାମୀ ତାଙ୍କ ପ୍ରତ୍ୟେକ ରାସରେ ମାୟାଧରଙ୍କୁ ରାଧା ଭୂମିକା ଦେବାକୁ ସ୍ଥିର କଲେ । କାଳୀଚରଣଙ୍କ ରାସଦଳର ପ୍ରାଥମିକ ଶିକ୍ଷା ଏବଂ ମୋହନସୁନ୍ଦର ଦେବଙ୍କ ଆନ୍ତରିକ ତଥା ପ୍ରଗାଢ଼ ଶିକ୍ଷାଦାନ ଫଳରେ ମାୟାଧର ରାଧା ଭୂମିକାରେ ଚମତ୍କାର ଅଭିନୟ କରିଥିଲେ । ପୁରୀ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ପ୍ରଥମ କରି 'କୃଷ୍ଣଜନ୍ମ' ନାଟକ 'ବନ୍ଦୀ' ନାମରେ ଅଭିନୀତ ହୋଇଥିଲା । ଏହିଠାରେ ନାଚଅଭ୍ୟାସ କରୁଥିବାବେଳେ ମାୟାଧର ପ୍ରଥମେ ବାଳକୃଷ୍ଣ ଦାସଙ୍କ ସଂସ୍ପର୍ଶରେ ଆସିଥିଲେ । ପୁରୀରେ ଥିବାବେଳେ ମାୟାଧର 'ମାନଭଞ୍ଜନ' ଓ 'ଜଗନ୍ନାଥ ବଲ୍ଲଭ' ଏହି ଦୁଇଟି ରାସ ବ୍ୟତୀତ ମୀରାବାଈ, ଲଳିତା ବଦ୍ୟାଦତ୍ତ, କୃଷ୍ଣଜନ୍ମ ଓ ଭକ୍ତ ସୁଦାମା ଆଦି ନାଟକରେ ମଧ୍ୟ ଅଭିନୟ କରିଥିଲେ । ପୁରୀ ବ୍ୟତୀତ ଏହି ନାଟ୍ୟଦଳରେ ମାୟାଧର ଅନୁଗୁଳ, ବରଗଡ଼, ଅଠାବର, ଭଟଲି, ସୋହେଲା, କଣ୍ଟାବାଞ୍ଜି ଓ ଅନ୍ୟ ସ୍ଥାନମାନଙ୍କରେ ଅଭିନୟ କରିଥିଲେ । ମାତ୍ର ଅନ୍ନପୂର୍ଣ୍ଣା 'ସି' ଗ୍ରୁପ୍ ଙ୍କ ବେଶିଦିନ ତିଷ୍ଠିଲ ନାହିଁ । ଆୟ ଅନୁପାତରେ ବ୍ୟୟ ଅଧିକ ହେବାରୁ ଏହି ଦଳ ପ୍ରାୟ ଦେଡ଼ବର୍ଷ ଭିତରେ ଭାଙ୍ଗିଗଲା ।

॥ ଦୁଇ ॥

ଅନ୍ନପୂର୍ଣ୍ଣା 'ସି' ଗ୍ରୁପ୍ ଭାଙ୍ଗିଗଲେ ପରେ ମାୟାଧର କଣ୍ଟିଲୋ ଫେରି ଆସି ପରେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ରେ ସାମିଲ ହେଲେ । ଏହାର ସ୍ୱତ୍ୱାଧିକାରୀ ଓ ସଞ୍ଚାଳକ ଥିଲେ କୃଷ୍ଣଗର ନନ୍ଦ । ସେ ଭଲ ଗୀତ ଗାଇ ପାରୁଥିଲେ, ଲେଖି ପାରୁଥିଲେ ଓ ବାଜା ମଧ୍ୟ ବଜାଇ ପାରୁଥିଲେ । ସେ ସମୟରେ ଅଭିନୀତ ହେଉଥିବା 'ଅଭିଷେକ' ନାଟକର ଏକ ଜଙ୍ଗଲ ନୃତ୍ୟରେ ମାୟାଧର ନୃତ୍ୟଗୁରୁ କେଳୁଚରଣ, ହାଧୂଚରଣ, ରଘୁନାଥ ଓ ରବୀନ୍ଦ୍ରନାଥଙ୍କ ସହ ଅଂଶଗ୍ରହଣ କରିଥିଲେ । ମାୟାଧର ଏହାପରେ ଭଞ୍ଜକିଶୋର ପଟ୍ଟନାୟକଙ୍କ 'ଜହର' ନାଟକରେ ସଂଯୋଜିତ ହୋଇଥିବା ପାଇକନାଚରେ ଅଂଶଗ୍ରହଣ କରିଥିଲେ । ସେତେବେଳେ ସେ ନୃତ୍ୟଗୁରୁ

ପଙ୍କଜଚରଣ ଦାସଙ୍କ ଠାରୁ ଓଡ଼ିଶୀ ନୃତ୍ୟ ଶିକ୍ଷା କରୁଥିଲେ । ଏହି ପେଶାଦାର ଅଭିନୟ ବ୍ୟତୀତ ନିଜ ଗ୍ରାମ ନିକଟବର୍ତ୍ତୀ ଘୋଳପୁର ଗ୍ରାମରେ ଗଢ଼ି ଉଠିଥିବା 'ପ୍ରଗତି ଯୁବକ ସଂଘ'ରେ ମାୟାଧର ସକ୍ରିୟ ଅଂଶଗ୍ରହଣ କରି ୧୯୪୭ ମସିହାରେ କାଳୀବାବୁଙ୍କ 'ଭାତ' ନାଟକ ମଞ୍ଚସ୍ଥ କରିଥିଲେ ଏବଂ ରଙ୍ଗମଞ୍ଚରେ ସୁମନ୍ତ ଦେବା ଯେଉଁ ଭୂମିକାଟିରେ ଅଭିନୟ କରୁଥିଲେ ସେ ନିଜେ ସେହି ଭୂମିକାରେ ଅଭିନୟ କରିଥିଲେ । ଏ ବେଳକୁ ମାୟାଧର କିଶୋର ଅବସ୍ଥାରେ ପଦାର୍ପଣ କରିଥିବାରୁ ଦଳରେ ଶିଶୁ ବା ଯୁବକ କୌଣସି ଭୂମିକା ପାଇପାରୁ ନଥିଲେ । କେବଳ ମାତ୍ର ନୃତ୍ୟରେ ସେ ଅଂଶଗ୍ରହଣ କରୁଥିଲେ । କୌଣସି ଅଭିନୟ ନଥିଲାବେଳେ ସେ ବଟକୃଷ୍ଣ ସେ ତାଙ୍କ ସହକାରୀ ଭାବେ ରୂପ ସଜ୍ଜାକାର ବା ଡ୍ରେସର୍‌ର କାର୍ଯ୍ୟ ତୁଲାଉଥିଲେ ।

କ୍ରମେ ନୃତ୍ୟ କ୍ଷେତ୍ରରେ ମାୟାଧରଙ୍କର ଭୂମିକା ପ୍ରମୁଖ ହୋଇ ଉଠିଲା । ୧୯୪୭ ମସିହାରେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପରେ ଅଭିନୀତ ହେଉଥିବା 'ସାଧବଝିଅ' ନାଟକରେ ଏହି ଥିଏଟରର ନୃତ୍ୟ ବିଭାଗ ହାତକୁ ନେଇଥିବା ଗୁରୁ କେଳୁଚରଣ ମହାପାତ୍ର 'ଦଶାବତାର ନୃତ୍ୟ' ସଂଯୋଜନା କଲେ । ଏ କ୍ଷେତ୍ରରେ ଦୁର୍ଲଭ ଚନ୍ଦ୍ର ସିଂହ ଓ ମାୟାଧରଙ୍କ ବଡ଼ ଭାଇଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । କେଳୁଚରଣ ଏହି ଦଶାବତାର ନୃତ୍ୟକୁ ସମ୍ପୂର୍ଣ୍ଣ ଓଡ଼ିଶୀ ପଦ୍ଧତିରେ ସଜାଇଥିଲେ । ଏହାର ବୋଲ୍‌ମାନଙ୍କୁ ପୁରାପୁରି ଓଡ଼ିଶୀ କରିଦେଲେ । ମାୟାଧରଙ୍କ ସହିତ 'ଜୟନ୍ତିକା'ର ଅନ୍ୟ ଗୁରୁମାନେ ଏହି ନୃତ୍ୟଟିକୁ ପୂର୍ଣ୍ଣଭାବେ ଓଡ଼ିଶୀ ପଦ୍ଧତିକୁ ଘେନି ଆସିଲେ । କ୍ରମେ ମାୟାଧରଙ୍କ ବଡ଼ଭାଇ ଏପରି ଏକ ଅକ୍ଷମଣୀୟ ଭୁଲ କରି ବସିଲେ ଯାହାର ଫଳଶ୍ରୁତି ରୂପେ ମାୟାଧରଙ୍କୁ ଘରେ କେହି ଆଉ ଯାତ୍ରା ଦଳକୁ ଛାଡ଼ିଲେ ନାହିଁ । ଏହି ଦୁଃଖପୂର୍ଣ୍ଣ ପରିସ୍ଥିତିରେ ମାୟାଧର ଜୀବିକା ନିର୍ବାହ ପାଇଁ ବେଙ୍ଗବାବୁଙ୍କ ମଟର ଗ୍ୟାରେଜରେ ଓ ପରେ କଟକ ଟେଲରିଂ ହାଉସ୍‌ରେ କିଛି ସମୟ ପାଇଁ କାମ କରିଥିଲେ । ମାତ୍ର ତାହା ତାଙ୍କର ପସନ୍ଦ ନ ଆସିବାରୁ ଏହାକୁ ଛାଡ଼ିଦେଇ ପୁନର୍ବାର ସେ ନାଟ୍ୟଦଳକୁ ଫେରି ଆସିଥିଲେ ।

ସେତିକିବେଳେ କବିଚନ୍ଦ୍ର କାଳୀଚରଣଙ୍କ ପାଖରୁ କିଛି କଳାକାର ବାହାରି ଆସି 'ନିଜ ଓଡ଼ିଶା ଥିଏଟର୍ସ' ଦଳ ଗଠନ କରିଥିଲେ । ଏହି

ଦଳରେ କେହି ମାଲିକ ନଥିଲେ । ଖଟବିନ୍ ସାହିର ଶ୍ରୀ ଜଗତ୍ଚନ୍ଦ୍ର ଦାସଙ୍କ ଘର ଭଡ଼ା ନିଆଯାଇ ଏହି ନୂଆଦଳ ଆରମ୍ଭ ହେଲା । ଏଥିରେ ବିଚିତ୍ରାନନ୍ଦ ବିଶ୍ୱାଳ, ନିକୁଞ୍ଜ କିଶୋର ଦାସ, ପଦ୍ମଲଭ ସାହୁ, ଇନ୍ଦ୍ରମଣି ଦେବୀ, ଫୁଲ କୁମାରୀ, ହେମଲତା ଏବଂ ମାୟାଧରଙ୍କ ବାନ୍ଧବନ୍ଧୁ ଗୋପୀକୃଷ୍ଣ ବେହେରା ଆଦି ଯୋଗ ଦେଲେ । ଏତଦ୍‌ବ୍ୟତୀତ କଟକର ବହୁ ସୌଖିନ କଳାକାର ମଧ୍ୟ ଏଥିରେ ଯୋଗଦାନ କଲେ । ମାତ୍ର ଏହି ଦଳର ଆୟ ନଥିବା ହେତୁ ଦଳ ଚାଲିପାରିଲା ନାହିଁ । ପରେ ଏହି ଦଳର ଅଧିକାଂଶ ଅଭିନେତା ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ରେ ଯୋଗ ଦେଇଥିଲେ । ସେତେବେଳକୁ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ କଟକରେ ପ୍ରତିଷ୍ଠିତ ହୋଇ ଯାଇଥିଲା । ମାୟାଧର କିନ୍ତୁ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ରେ ଥିବା ବଡ଼ଭାଇ ତାଙ୍କ ଉପରେ ରାଗିଥିବାରୁ ସେ ଦଳରେ ଯୋଗଦେଲେ ନାହିଁ ବା ତାଙ୍କ ଭାଇ ମଧ୍ୟ ତାଙ୍କୁ ଡାକିବାକୁ ଆସିଲେ ନାହିଁ । ମାତ୍ର ଶେଷରେ 'ନନ୍ଦେ ଆପଣେ' ନିଜେ ଆସି ମାୟାଧରଙ୍କୁ ଡାକିବାରୁ ମାୟାଧର ଏହି ଦଳରେ ଯୋଗ ଦେଇଥିଲେ ।

ଇତିମଧ୍ୟରେ ପଣ୍ଡିତ ଉଦୟ ଶଙ୍କରଙ୍କ ପାଖରେ ତାଲିମପ୍ରାପ୍ତ ଦୟାଲ ଶରଣ କଟକ ଆସିଥିଲେ ଓ 'ନନ୍ଦେ ଆପଣେ' (କାଳୀଚରଣ ନନ୍ଦ) ତାଙ୍କୁ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌କୁ ଆଣିଥିଲେ । ସେ ନୃତ୍ୟଗୁରୁ କେଳୁଚରଣଙ୍କୁ 'ନଟରାଜ' ଓ ମାୟାଧର ପ୍ରଭୃତିଙ୍କୁ 'ଦଧିମନ୍ଥନ' ନୃତ୍ୟ ଶିକ୍ଷା ଦେଲେ । ମାୟାଧର ଏହି ସମୟରେ କେଳୁଚରଣ ଓ ଦେବପ୍ରସାଦ ଦାସଙ୍କ ଠାରୁ ନୃତ୍ୟଶିକ୍ଷା କରୁଥିଲେ । କେଳୁଚରଣଙ୍କ ଶିକ୍ଷାଦାନରେ ମାୟାଧର ପ୍ରମୁଖ ସାହାଜାହାନର ମୃତ୍ୟୁ ସନ୍ଧ୍ୟା, ଭଗ୍ନ ନୃତ୍ୟ, ସାପ ଓ ନେଉଳ, ଧାନକଟା, ମୀରାର ସ୍ୱପ୍ନ, ଶିବ ତାଣ୍ଡବ ଆଦି ନୃତ୍ୟ ଏହି ନାଟ୍ୟସଂସ୍ଥା ଆନୁକୂଲ୍ୟରେ ପରିବେଷଣ କରିଥିଲେ । କେଳୁଚରଣଙ୍କ ସାହାଯ୍ୟାର୍ଥେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ତରଫରୁ ମାୟାଧର ପ୍ରମୁଖ ଏକ ନୃତ୍ୟ ସନ୍ଧ୍ୟାର ଆୟୋଜନ ମଧ୍ୟ କରିଥିଲେ । ଏହି ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ଥିବା ଅବସ୍ଥାରେ ୧୯୫୨ ମସିହା ଅଗଷ୍ଟ ୨୮ ତାରିଖ ଗଣେଶ ପୂଜାଦିନ କଟକରେ 'କଳାବିକାଶ କେନ୍ଦ୍ର' ଆରମ୍ଭ ହେଲା । ମାୟାଧର ଏହି କଳାବିକାଶ କେନ୍ଦ୍ରରେ ନୃତ୍ୟ ଦାୟିତ୍ୱରେ ରହିଲେ । ଏହି କେନ୍ଦ୍ର ସ୍ଥାପନରେ ବିଳମ୍ବ ହେବାରୁ କଟକ ଓଡ଼ିଆ ବଜାରରେ ଗୌର ଘୋଷଙ୍କ ଦାଣ୍ଡଘରକୁ ପନ୍ଦର ଟଙ୍କାରେ ଭଡ଼ା ନିଆଯାଇ

ଥିଲା ଏବଂ ଏହିଠାରେ ଗୀତରେ ବଶୁଦା, ତବଲାରେ ରାଧାବାବୁ ଏବଂ ନୃତ୍ୟରେ ମାୟାଧର ଶିକ୍ଷାଦାନ ପାଇଁ ନିଯୁକ୍ତ ହୋଇଥିଲେ ।

କଳାବିକାଶ କେନ୍ଦ୍ରରେ ନିଯୁକ୍ତ ହେଲେ ମଧ୍ୟ ମାୟାଧର ଅନ୍ନପୂର୍ଣ୍ଣା ଛାଡ଼ିନଥିଲେ । କ୍ରମେ ନୃତ୍ୟ ପ୍ରତି ଲୋକଙ୍କ ଆସ୍ଥା ବଢ଼ି ଉଠିବାରେ ଲାଗିଲା । କଳାବିକାଶ କେନ୍ଦ୍ରରେ କ୍ରମେ ବହୁ ଛାତ୍ରଛାତ୍ରୀ ଯୋଗଦାନ କଲେ । ଓଡ଼ିଶାରେ ନୃତ୍ୟ ସମ୍ପର୍କିତ କୌଣସି ପାଠ୍ୟପୁସ୍ତକ ନଥିବାରୁ ଦୟାନିଧି-ବାବୁ ପ୍ରଥମେ ଏକ ଏ ସମ୍ପର୍କିତ ପାଠ୍ୟପୁସ୍ତକ ଛପାଇଥିଲେ । ଅନ୍ନପୂର୍ଣ୍ଣା ଆନୁକୂଲ୍ୟରେ ୧୯୫୨ ମସିହାରେ ପରିବେଷିତ ହେଉଥିବା 'ଲବଣ୍ୟବତୀ' ନାଟକରେ ଉଦୟନାଥ ମିଶ୍ର 'ପଞ୍ଚବଟୀ' ନୃତ୍ୟ ନାଟିକାର ସଂଯୋଜନା କରିଥିଲେ । ଏଥିରେ କେଳୁଚରଣ ରାମ, ଲକ୍ଷ୍ମୀ ସୀତା, ମାୟାଧର ଲକ୍ଷ୍ମଣ, ଦେବପ୍ରସାଦ ରାବଣ ଓ ପଙ୍କଜଚରଣ ଜଟାୟୁ ଭୂମିକାରେ ଅଭିନୟ କରିଥିଲେ । କିଶୋରକବି ଶ୍ୟାମସୁନ୍ଦର ଦାସଙ୍କ ସଙ୍ଗୀତ ପରିକଳ୍ପନାରେ ଏହା ଅଭିନୀତ ହୋଇଥିଲା ।

ନୃତ୍ୟପାଇଁ ସମୟ ଏବଂ ସର୍ବସ୍ୱ ବିନିଯୋଗ କରିଥିବା ଏହି 'ଗୁରୁ' ମାନେ କିନ୍ତୁ ସମାଜରେ ଅବହେଳିତ ଜୀବ ଥିଲେ । ଏମାନେ ଜନ-ସାଧାରଣଙ୍କ ନିକଟରେ ଥିଲେ ଚରିତ୍ରହୀନ । ମାତ୍ର ଏମାନଙ୍କ ଏକକ ପ୍ରଚେଷ୍ଟାରେ ଓଡ଼ିଶୀ ନୃତ୍ୟ ଆଜି ଅନ୍ତର୍ଜାତୀୟ ସ୍ତରରେ ପ୍ରତିଷ୍ଠିତ ହୋଇ ପାରିଛି । ମାୟାଧର କଳାବିକାଶ କେନ୍ଦ୍ରରେ ଥାଇ ଥିଏଟରରେ କାମ କରୁଥିବାରୁ ଅନେକ ଅଭିଭାବକ ସେମାନଙ୍କ ଝିଅମାନଙ୍କୁ କଳାବିକାଶ କେନ୍ଦ୍ରକୁ ଛାଡ଼ିବାକୁ ଇଚ୍ଛା କଲେ ନାହିଁ । କଳାବିକାଶ କେନ୍ଦ୍ରର କର୍ମକର୍ତ୍ତା-ଗଣ ଏ ବିଷୟ ନେଇ ଚିନ୍ତିତ ହୋଇଗଲେ । ସେମାନେ କେନ୍ଦ୍ରର ସଭାପତି ପରିଜା ସାହେବଙ୍କୁ ଏ ପ୍ରସଙ୍ଗରେ ଅବଗତ କରାଇଲେ । ପରିଜା ସାହେବଙ୍କ ପରାମର୍ଶକ୍ରମେ ମାୟାଧର କିଛିଦିନ ପାଇଁ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ଛାଡ଼ି-ଦେଲେ । ମାୟାଧର ସେତେବେଳକୁ ଅନେକ ଛାତ୍ରୀଙ୍କୁ ଘରେଇ ଭାବରେ ନୃତ୍ୟଶିକ୍ଷା ଦେଉଥିଲେ । ସେମାନଙ୍କ ମଧ୍ୟରୁ ଡାକ୍ତର ଗିରିଜାଶଙ୍କର ଦାସ ମହାପାତ୍ରଙ୍କ କନ୍ୟା ଶଶିଲେଖା, ସବ୍‌ଜଜ୍ ଭୋଳାନାଥ ପଣ୍ଡାଙ୍କ କନ୍ୟା ବିଜୟା, ସି. ଆଇ. ଡି. ପୋଲିସ ଡି. ଏସ୍. ପି. ରାଜଗୋବିନ୍ଦ ଘୋଷଙ୍କ କନ୍ୟା ସାଧନା, ନରସିଂହ ରଥଙ୍କ କନ୍ୟା ତଥା ଜୟନ୍ତୀ, ଶୁଭଶ୍ରୀ, କଲ୍ୟାଣୀ,

ସୁକାନ୍ତ ଆଦି ଅନ୍ୟତମ । ପାଞ୍ଚଟଙ୍କାରୁ ପନ୍ଦର ଟଙ୍କା ମଧ୍ୟରେ ଏମାନେ ଜଣେ ଜଣେ ଦରମା ଦେଉଥିଲେ । କେବଳ ଡାକ୍ତର ଦାସମହାପାତ୍ର ମାୟାଧରଙ୍କୁ ପଚିଶଟଙ୍କା ଦରମା ଦେଉଥିଲେ ଓ ଡାକ୍ତରବାବୁଙ୍କ ଗାଡ଼ିରେ ମାୟାଧର ଯିବା ଆସିବା କରୁଥିଲେ ।

ମାୟାଧର ଅନ୍ନପୂର୍ଣ୍ଣା ଛାଡ଼ି ଦେବାର ସମ୍ବାଦ ପୂର୍ବରୁ ଜାଣିପାରି 'ନନ୍ଦେ ଆପଣେ' ମାୟାଧରଙ୍କୁ ଅନ୍ନପୂର୍ଣ୍ଣାରୁ ନ ଯିବାପାଇଁ ସମସ୍ତ ବ୍ୟବସ୍ଥା କଲେ । ମାତ୍ର ବନ୍ଧୁମାନଙ୍କ ସାହାଯ୍ୟରେ ମାୟାଧର ନିଜ ସୁବର୍ଣ୍ଣ ଭବିଷ୍ୟତର କଳ୍ପନା କରି ଥରେ ଅନ୍ନପୂର୍ଣ୍ଣା ପରିସରରୁ ନିଜ ଜିନିଷପତ୍ର ନେଇ ବାହାରକୁ ଚାଲିଗଲେ । ଏପରିକି 'ନନ୍ଦେ ଆପଣେ' ମାୟାଧରଙ୍କୁ ବାଡ଼େଇବା ପାଇଁ ଗୁଣ୍ଡା ପର୍ଯ୍ୟନ୍ତ ମଧ୍ୟ ଲଗାଇଲେ । ମାତ୍ର ମାୟାଧରଙ୍କର କୌଣସି କ୍ଷତି ହୋଇନାହିଁ । କ୍ରମେ କଳାବିକାଶ କେନ୍ଦ୍ରରେ ନାଚ ଶିଖୁଥିବା ଝିଅ-ମାନଙ୍କର ସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲା । ପ୍ରାୟ ଚଉତିରିଶ ଜଣ ଝିଅ ନାଚ ଶିଖିବାପାଇଁ ନାମ ଲେଖାଇଥିବାରୁ ସେମାନଙ୍କ ଶିକ୍ଷାଦାନ ପାଇଁ ଅନ୍ୟ ଜଣେ ନୃତ୍ୟ ଶିକ୍ଷକଙ୍କ ଆବଶ୍ୟକ ପଡ଼ିଲା । ନୃତ୍ୟଗୁରୁ କେଳୁଚରଣ ସେତେବେଳେ କୌଣସି ସଂସ୍ଥା ସହ ସମ୍ପୃକ୍ତ ନ ଥିବାରୁ ତାଙ୍କୁହିଁ ମାୟାଧର ପ୍ରମୁଖ ଅନୁରୋଧ କରି ମାସିକ କୋଡ଼ିଏ ଟଙ୍କା ଦରମାରେ କେନ୍ଦ୍ରରେ ନିଯୁକ୍ତ କରିଥିଲେ । ମାୟାଧର ସେତେବେଳେ ମାସକୁ ପନ୍ଦର ଟଙ୍କା ବେତନ ପାଉଥିଲେ । କ୍ରମେ ଛାତ୍ରୀ ସଂଖ୍ୟା ପୁଣି ବଢ଼ିବାରୁ କେନ୍ଦ୍ର ଟଙ୍ଗା ମନ୍ଦିରକୁ ସ୍ଥାନାନ୍ତରିତ ହେଲା । ଏହାର କିଛି ମାସ ପରେ କେନ୍ଦ୍ରରୁ ଏକ ପତ୍ର ଆସିଲା । ଏଥିରେ ଉଲ୍ଲେଖଥିଲା ଯେ କେନ୍ଦ୍ର ଆର୍ଥିକ ଦୁରବସ୍ଥା ଦେଇ ଗତି କରୁଥିବାରୁ ଏ ଅବସ୍ଥାରେ ଦୁଇ ଦୁଇଜଣ ଶିକ୍ଷକଙ୍କୁ ରଖିବା ସମ୍ଭବପର ହେବନାହିଁ । ତେଣୁ ସେହି ସମୟ ପାଇଁ ମାୟାଧରଙ୍କୁ କାର୍ଯ୍ୟରୁ ଅନ୍ତର କରାଯାଇ ପରେ ଅଧିକ ଛାତ୍ରୀହେଲେ ନିଯୁକ୍ତ ହିଆଯିବ ବୋଲି ପତ୍ରଟିରେ ଉଲ୍ଲେଖ ଥିଲା । ମାୟାଧର ଏଥିରେ ବିଚଳିତ ନହୋଇ କଳାବିକାଶ କେନ୍ଦ୍ର ପରିତ୍ୟାଗ କରିଥିଲେ ।

ମାତ୍ର ମାୟାଧରଙ୍କ ଠାରୁ ନୃତ୍ୟ ଶିଖୁଥିବା ଛାତ୍ରୀ ଓ ସେମାନଙ୍କ ଅଭିଭାବକ ତଥା ମାୟାଧରଙ୍କ ଶୁଭଚିନ୍ତକମାନେ ଏହି କଥାକୁ ସହଜରେ ଗ୍ରହଣ କରିପାରିଲେ ନାହିଁ । ବିଶେଷ କରି ଛାତ୍ରୀ ସାଧନାର ବାପା

ଗୀତଗୋବିନ୍ଦ ବୋଷ ତାଙ୍କୁ ଘରେ ଏକ ନାଚକ୍ଲାସ ଖୋଲିବାକୁ ପରାମର୍ଶ ଦେଲେ । ଇତିମଧ୍ୟରେ ପାଟଣାର ଏକ କାର୍ଯ୍ୟକ୍ରମ ଲାଗି କେନ୍ଦ୍ରକୁ ଆମନ୍ତ୍ରଣ କରାଯାଇଥିଲା । ସେଠାରେ 'ବାଲକନ ଜିବାରି' ଦିବସ ଉପଲକ୍ଷେ ଆୟୋଜିତ ଏକ ବିଶେଷ ଉତ୍ସବରେ ଯୋଗ ଦେବାପାଇଁ କେନ୍ଦ୍ର ସାଧନାକୁ ସ୍ଥିର କରିଥିଲେ । ମାତ୍ର ସାଧନାର ବାପା ଗୀତଗୋବିନ୍ଦ ବାବୁ ସାଧନା ସହିତ ମାୟାଧର ଯିବାକୁ ବାଧ କରନ୍ତେ କେନ୍ଦ୍ରର କର୍ମକର୍ତ୍ତା ବାଧ୍ୟହୋଇ ମାୟାଧରଙ୍କୁ କେନ୍ଦ୍ରରେ ପୁନଃନିଯୁକ୍ତି ଦେଇଥିଲେ । ପାଟଣାରେ ମାୟାଧରଙ୍କ ଅଧିନାୟକତ୍ୱରେ ଯାଇଥିବା ଶିଳ୍ପୀମାନେ ଚମତ୍କାର ନୃତ୍ୟ ପରିବେଷଣ କରିଥିବାରୁ କେନ୍ଦ୍ର ମାୟାଧରଙ୍କୁ ଏକ ହାତଘଣ୍ଟା ଉପହାର ଦେଇଥିଲା ।

ଏହି ସମୟରେ କଟକରେ ଜନତା ରଙ୍ଗମଞ୍ଚ ସ୍ଥାପନ କରାଗଲା । ମାୟାଧରଙ୍କ ପରିଚିତ ବନ୍ଧୁ ଓ ସାଙ୍ଗସାଥୀମାନେ ସେଥିରେ ଯୋଗଦେଲେ ଓ ମାୟାଧରଙ୍କୁ ସେହି ନାଟ୍ୟ ସଂସ୍ଥା ସହ ଜଡ଼ିତ ହେବାକୁ ଅନୁରୋଧ କଲେ । ଶେଷରେ ମାୟାଧର ଏ ରଙ୍ଗମଞ୍ଚ ସହ ସଂଶ୍ଳିଷ୍ଟ ହେଲେ ଏବଂ ଅଭିନୟ କରିବା ସହିତ ନୃତ୍ୟ ମଧ୍ୟ ଶିକ୍ଷା ଦେଲେ; ପିଲାଦିନଠାରୁ ଏଯାଏଁ ଅଭିନୟ ଏବଂ ନୃତ୍ୟ କ୍ଷେତ୍ରରେ ବିଭିନ୍ନ ଗୁରୁଙ୍କଠାରୁ ଶିକ୍ଷାଲାଭ କରି ମାୟାଧର ପୃଥିବୀର ପ୍ରାୟ ଅର୍ଦ୍ଧାଧିକ ଦେଶରେ ନିଜ ନୃତ୍ୟକଳା ପ୍ରଦର୍ଶନ କରିବା ପାଇଁ ସକ୍ଷମ ହୋଇ ପାରିଛନ୍ତି ।

## ॥ ତିନି ॥

୧୯୫୬ ଖ୍ରୀ.ରେ 'ଓଡ଼ିଶା ନୃତ୍ୟ ସଙ୍ଗୀତ ନାଟ୍ୟକଳା ପରିଷଦ' ପକ୍ଷରୁ ଆୟୋଜିତ ଗୀତ, ନୃତ୍ୟ ଓ ବାଦ୍ୟଯନ୍ତ୍ର ପ୍ରତିଯୋଗିତାରେ ମାୟାଧର ପ୍ରଥମ ସ୍ଥାନ ଅଧିକାର କରିଥିବାରୁ ତାଙ୍କୁ କଥାକଳୀ ଶିଖିବା ଲାଗି ମାଡ୍ରାସସ୍ଥିତ 'କଳାକ୍ଷେତ୍ର'କୁ ପଠାଯାଇଥିଲା । ଏହି 'ଓଡ଼ିଶା ନୃତ୍ୟ ସଙ୍ଗୀତ ନାଟ୍ୟକଳା ପରିଷଦ' ପରେ 'ଓଡ଼ିଶା ସଙ୍ଗୀତ ନାଟକ' ନାମରେ ପରିଚିତ ହେଲା । ଓଡ଼ିଶା ସରକାରଙ୍କଠାରୁ ମାସିକ ପଚାଶ ଟଙ୍କା ଛାତ୍ରବୃତ୍ତି ପାଇ ମାୟାଧର ଶ୍ରୀମତୀ ସଂଯୁକ୍ତା ମିଶ୍ର (ପାଣିଗ୍ରାହୀ)ଙ୍କ ସହ ମାଡ୍ରାସ୍ ଗଲେ । ମାୟାଧରଙ୍କ ପୂର୍ବରୁ ସଂଯୁକ୍ତା ଓ ଶ୍ରୀମତୀ ମିନତୀ ଦାସ ସେଠାକୁ ଯାଇ ଭରତନାଟ୍ୟମ୍ ଶିକ୍ଷା କରୁଥିଲେ । ମାୟାଧର ଯିବାର କିଛିଦିନ

ପୂର୍ବରୁ ମିନତ୍ତିଦେବୀ କଳାକ୍ଷେତ୍ର ଛାଡ଼ି ଗୁରୁ ଗୋପିନାଥଙ୍କ ପିଲ୍ଲଇଙ୍କ ଅନୁଷ୍ଠାନରେ ନୃତ୍ୟ ଶିଖିବାକୁ ଲାଗିଲେ । କଳାକ୍ଷେତ୍ରରେ ମାୟାଧର ଅଧ୍ୟୟନ କରୁଥିବା ଅବସରରେ ଥରେ ମିନତ୍ତିଦେବୀ ମାୟାଧରଙ୍କୁ କହିଲେ ଯେ ସେ ସେଠାରେ ନୃତ୍ୟ ଶିଖୁ ଶିଖୁ ବୁଢ଼ା ହୋଇଯିବେ । କାରଣ ସେଠାରେ ସାତ ପାଞ୍ଚବର୍ଷ ରହିବାକୁ ପଡ଼ିବ । ମାତ୍ର ମିନତ୍ତିଦେବୀଙ୍କ କଥାକୁ ସମର୍ଥନ କରୁଥିବା ମାୟାଧର ୧୯୫୫ ମସିହାରେ କଳାକ୍ଷେତ୍ରରେ ନାମ ଲେଖାଇଲେ ।

କଳାକ୍ଷେତ୍ରରେ ପ୍ରବେଶ କରିବା ପୂର୍ବରୁ ଛାତ୍ରଛାତ୍ରୀମାନଙ୍କୁ କଠୋର ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ମାୟାଧର 'ଦଶାବତାର ନୃତ୍ୟ' ପରିବେଷଣ କରି ସେହି କଠୋର ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇଥିଲେ । କଳା କ୍ଷେତ୍ରରେ ପ୍ରଥମ ଛଅମାସ ମାୟାଧର ନିର୍ବୋଧ ଅଜ୍ଞାନ ପରି ସମୟ କଟାଇଲେ । କାରଣ ମାଡ୍ରାସ୍‌ର ଭାଷା, ଚାଲିଚଳନ ଖାଦ୍ୟପେୟ ସହ ମାୟାଧର ଆଦୌ ଅଭ୍ୟସ୍ତ ନଥିଲେ । ମାୟାଧରଙ୍କ ନୃତ୍ୟ ଶ୍ରେଣୀରେ ଚାରିଜଣ ଛାତ୍ର ଥିଲେ । ସେମାନେ ହେଲେ କୃଷ୍ଣମନ୍, ଶଙ୍କର ହୋମ୍ବଲ, ଧନଞ୍ଜୟନ୍ ଓ ବାଲ୍‌ଗୋପାଲନ୍ । ଶଙ୍କର ହୋମ୍ବଲଙ୍କୁ ଛାଡ଼ିଦେଲେ ଅନ୍ୟ ତିନିଜଣ ଥିଲେ କେରଳର । ଧୀରେ ଧୀରେ ଶଙ୍କର ହୋମ୍ବଲଙ୍କ ସହ ମାୟାଧର ଘନିଷ୍ଠ ହୋଇ ଆସିଲେ ଓ ତାଙ୍କୁ ଶ୍ରଦ୍ଧାରେ ସେ 'ଆନ୍ନା' (ବଡ଼ଭାଇ) ବୋଲି ଡାକୁଥିଲେ । ବୟସରେ ବଡ଼ ଏବଂ ସ୍ନେହୀ ମଣିଷଟି ସେଠାରେ ନୃତ୍ୟଗୁରୁ ଥିଲେ । ତେଣୁ ମାୟାଧର ତାଙ୍କୁ ନିଜ ମଣିଷ ବୋଲି ଗ୍ରହଣ କରିନେଇ ତାଙ୍କର ସ୍ନେହ ଓ ସଦିଚ୍ଛାର ପାଣିପବନରେ ଦୀର୍ଘ ପାଞ୍ଚଗୋଟି ବର୍ଷ କଳାକ୍ଷେତ୍ରରେ ଅତିବାହିତ କଲେ ।

ଏହି ଶଙ୍କର ହୋମ୍ବଲ ହିଁ କଳାକ୍ଷେତ୍ରରେ ମାୟାଧରଙ୍କୁ ସବୁ କ୍ଷେତ୍ରରେ ସାହାଯ୍ୟ କରୁଥିଲେ । କଳାକ୍ଷେତ୍ର ମାୟାଧରଙ୍କ ଜୀବନରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲା । ଅତୀତରେ ବାଲି ସାହି ଦୋକାନରୁ ଚା' ଜଳଖିଆ ଆଣୁଥିବା, ସିନ୍ ଉଡ଼ୁଥିବା, ଚୌକି, ବେଞ୍ଚ ସଜାଡ଼ୁଥିବା 'ମାଇଆ' ଆଜି ଭାରତବାସୀଙ୍କ ନିକଟରେ ସ୍ୱନାମଧନ୍ୟ ନୃତ୍ୟଗୁରୁ

ମାୟାଧର ରାଉତ ଭାବେ ଏହି 'କଳାକ୍ଷେତ୍ର'କୁ ପରିଚୟ କରାଇଛନ୍ତି । କଳାକ୍ଷେତ୍ରରୁ ଫେରିବା ପରେ ମାୟାଧର ନିଜ ପର୍ଯ୍ୟାପ୍ତ ଅଭିଜ୍ଞତା ଓ ଉନ୍ନତ ମାନର ଅଧ୍ୟୟନଲବ୍ଧ ଜ୍ଞାନ ଦ୍ୱାରା ଓଡ଼ିଶୀ ନୃତ୍ୟକୁ ଏକ ମର୍ଯ୍ୟାଦାଜନକ ସ୍ଥାନ ଦେବାକୁ ଚାହିଁଲେ । ୧୯୫୫ ମସିହା ପୂର୍ବରୁ ଓଡ଼ିଶୀ ନୃତ୍ୟର ଯେ କି ରୂପ ଥିଲା, ତାହା କେହି ସ୍ପଷ୍ଟ କହିପାରିବେ ନାହିଁ । ମାୟାଧର ଏହି ନୃତ୍ୟକୁ ଏକ ବ୍ୟବସ୍ଥିତ ଓ ଶାସ୍ତ୍ରୀୟ ମର୍ଯ୍ୟାଦା ପ୍ରଦାନ କରିଥିଲେ ।

୧୯୫୫ ମସିହା 'ମେ ମାସରେ କଳାକ୍ଷେତ୍ର ଦୁଇମାସ ପାଇଁ ·ବନ୍ଦ ରହିବାରୁ ମାୟାଧର ଓଡ଼ିଶା ଚାଲିଆସିଲେ । ଓଡ଼ିଶାକୁ ଆସି ସେ ଛାତ୍ର-ଛାତ୍ରୀମାନଙ୍କୁ ପ୍ରଥମେ ଅଭିନୟ ଦର୍ପଣର ମୁଦ୍ରା ଶିକ୍ଷା ଦେଇଥିଲେ । ତା'ପରେ ହାତରେ ମାରା ଦେଇ ତାଳ ଗଣାଇବା ଶିଖାଇଲେ । ମାୟାଧରଙ୍କ ପୂର୍ବରୁ ପ୍ରାୟ କେହି ଗୁରୁ ଏହା ଶିଖାଇ ନଥିଲେ । ମାୟାଧର ଯେଉଁ ଦୁଇମାସ କଟକରେ ରହନ୍ତି ତାଙ୍କୁ ପ୍ରଚୁର ପରିଶ୍ରମ କରିବାକୁ ପଡ଼େ । ଧୀରେ ଧୀରେ ମାୟାଧର ଅଭିନୟ ଦର୍ପଣର ବିଭିନ୍ନ ମୁଦ୍ରାକୁ ଓଡ଼ିଶୀ ନୃତ୍ୟରେ କଳାବିକାଶ କେନ୍ଦ୍ରରେ ଥିବା ଛାତ୍ରଛାତ୍ରୀଙ୍କ ଜରିଆରେ ବ୍ୟବହାର କଲେ । ୧୯୫୯/୬୦ ମସିହାରେ ମାୟାଧର କେନ୍ଦ୍ର ଛାତ୍ରଛାତ୍ରୀମାନଙ୍କୁ ଥରେ ଓଡ଼ିଶୀ ନୃତ୍ୟରେ ଭକ୍ତିଭାବ ଓ ଶୃଙ୍ଗାରରସ ଶିକ୍ଷା ଦେବାବେଳେ ଓଡ଼ିଶାର ତତ୍କାଳୀନ ଉପ-ମୁଖ୍ୟମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ କେନ୍ଦ୍ର ପରିଦର୍ଶନ କରିବାକୁ ଆସିଥିଲେ । ସେ କଳାବିକାଶ କେନ୍ଦ୍ରର କର୍ମକର୍ତ୍ତାମାନଙ୍କୁ ଭକ୍ତିଭାବ ଓ ଶୃଙ୍ଗାରରସ ନ ଶିଖାଇବାକୁ ପରାମର୍ଶ ଦେଇଥିଲେ । ମାତ୍ର ମାୟାଧର ଏ କଥାରେ କର୍ଣ୍ଣପାତ ନକରି ଗୀତଗୋବିନ୍ଦ ଉକ୍ତରେ ଭକ୍ତିଭାବ ଓ ଶୃଙ୍ଗାର ରସର ସଂଯୋଜନା କଲେ । ୧୯୬୧ ମସିହାରେ ଗୀତଗୋବିନ୍ଦର ପ୍ରଖ୍ୟାତ ସଙ୍ଗୀତ 'ପଶ୍ୟତି ଦିଶିଦିଶି' ସେ କୁମାରୀ କୁଙ୍କୁମ ଦାସଙ୍କୁ ଶିଖାଇଥିଲେ । ଏବେ ଗୀତଗୋବିନ୍ଦରେ ଶୃଙ୍ଗାରରସ ଓ ଭକ୍ତିଭାବକୁ ଓଡ଼ିଶାର ସମସ୍ତ ନୃତ୍ୟଗୁରୁ ଶିଖାଉଛନ୍ତି ।

ଆବଶ୍ୟକ ହେଲେ ମାୟାଧର ନୃତ୍ୟ କ୍ଷେତ୍ରରେ ନିଜ ପୂର୍ବସୂରୀ ଓ ସମସାମୟିକମାନଙ୍କ ପରାମର୍ଶ ନେଉଥିଲେ । ଗୁରୁ କେଳୁଚରଣ ମହାପାତ୍ର, ବାଳକୃଷ୍ଣ ଦାସ, ରଘୁନାଥ ମହାନ୍ତି ଓ ନିଜେ ମାୟାଧର ଏମାନେ

ଏକସିତ ହୋଇ ଡାଙ୍କା ବଜାରର ଏକ ଦୋକାନ ଘରେ 'ଗୀତ-ଗୋବିନ୍ଦ'ର 'ଲଳିତ ଲବଙ୍ଗଲତା' ଗୀତରେ କେଉଁଠି କେଉଁ ମୁଦ୍ରା ଲଗିବ ବିଷୟ ଆଲୋଚନା କରିଥିଲେ । ଗୁରୁ କେଳୁଚରଣ ଓଡ଼ିଶୀ ନୃତ୍ୟର ବିଭିନ୍ନ ମୁଦ୍ରାର ପ୍ରଚଳନ ନେଇ ମାୟାଧରଙ୍କ ପରାମର୍ଶ କରୁଥିଲେ । ଏହା ପୂର୍ବରୁ 'ଗୀତଗୋବିନ୍ଦ'ର କେବଳ 'ଦଶ ଅବତାର' ନୃତ୍ୟଟି ପରିବେଷିତ ହେଉଥିଲା । ୧୯୫୭ ମସିହାରେ ଗୁରୁ ଦେବପ୍ରସାଦ ଇନ୍ଦ୍ରାଣି ରହମାନ୍‌ଙ୍କୁ 'ସ୍ତନେ ହରିମିହ ବିହରତି ବନମାଲୀ' ଅଭିନୟଟି ଶିଖାଇ ଥିଲେ ।

ଓଡ଼ିଶୀ ନୃତ୍ୟର ବିକାଶ ଦିଗରେ ଓଡ଼ିଶାରେ ପ୍ରତିବର୍ଷ ପାଳିତ ହେଉଥିବା ଭଞ୍ଜଜୟନ୍ତୀର ମଧ୍ୟ ଏକ ବିଶେଷ ଭୂମିକା ଅଛି । ଓଡ଼ିଶୀ ନୃତ୍ୟକୁ ମାହାରୀମାନଙ୍କଠାରୁ ନେଇଆସି କବିଚନ୍ଦ୍ର କାଳୀଚରଣ ପ୍ରଥମେ ୧୯୪୩ ମସିହାରେ 'ଜୟଦେବ' ନାଟକର 'ମାହାରୀ ନାଚ'ରେ ଏବଂ ୧୯୫୪ ମସିହାରେ 'ଅତିବଡ଼ୀ ଜଗନ୍ନାଥ ଦାସ'ରେ 'ଗୋଟିପୁଅ ନାଚ'ରେ ପ୍ରକାଶ କରିଥିଲେ । ଏହା ପରେ ଏହି ନୃତ୍ୟ ବ୍ୟାପକରୁ ବ୍ୟାପକତର ହୋଇ ସମଗ୍ର ଓଡ଼ିଶାରେ ପ୍ରତିଷ୍ଠିତ ହୋଇଗଲା । ପ୍ରତିବର୍ଷ ମେ' ୧୭ରୁ ୨୨ ତାରିଖ ପର୍ଯ୍ୟନ୍ତ ପାଳିତ ହେଉଥିବା ଭଞ୍ଜଜୟନ୍ତୀରେ ମାୟାଧରଙ୍କ କେନ୍ଦ୍ର କିଛି ନା କିଛି ନୃତ୍ୟନାଟିକା ଭଞ୍ଜ ସଙ୍ଗୀତକୁ ନେଇ ପ୍ରସ୍ତୁତ କରେ । ରଜତ କରଙ୍କ ଲିଖିତ ଏବଂ ବାଳକୃଷ୍ଣ ଦାସଙ୍କ ସଙ୍ଗୀତ ନିର୍ଦ୍ଦେଶିତ ଏହି ନୃତ୍ୟନାଟିକାମାନଙ୍କର ନୃତ୍ୟ ପରିକଳ୍ପନା ଅଧିକାଂଶ ସମୟରେ ମାୟାଧରଙ୍କ ଉପରେ ହିଁ ପଡ଼ିଥାଏ । ମାୟାଧରଙ୍କ ଅନ୍ତରଙ୍ଗ ବନ୍ଧୁ ମାଳମାଧବ ବୋଷ (ମାଲୁଦା) ଯେ ନୃତ୍ୟର ତଥ୍ୟାତ୍ମକ ବିଷୟ ଉପରେ ପୂର୍ଣ୍ଣ ଅବଗତ ଥିଲେ, ସେ ଭଞ୍ଜସଙ୍ଗୀତକୁ ଆଧାର କରି ପରେ କେତେକ ନୃତ୍ୟନାଟିକା ରଚନା କଲେ, ଯାହା ଓଡ଼ିଶୀ ନୃତ୍ୟ ତଥା ସଙ୍ଗୀତର ମର୍ଯ୍ୟାଦାକୁ ବହୁଗୁଣିତ ହେବାରେ ସାହାଯ୍ୟ କରିଥିଲା । ଏହି ମାଲୁଦା କେନ୍ଦ୍ରର ଛାତ୍ରଛାତ୍ରୀମାନଙ୍କ ପାଇଁ ନୃତ୍ୟ ସମ୍ପର୍କିତ ବଡ଼ ବଡ଼ ଇଂରାଜୀ ପୁସ୍ତକରୁ ଉପାଦେୟ ତଥ୍ୟମାନ ଆହରଣ କରି ସରଳ ଓଡ଼ିଆ ଭାଷାରେ ଛାତ୍ରଛାତ୍ରୀମାନଙ୍କ ନିକଟରେ ପରିବେଷଣ କରୁଥିଲେ ।

କଳାକ୍ଷେତ୍ର ମାୟାଧରଙ୍କ ଜୀବନର ଏକ ପରିବର୍ତ୍ତିନୀ ମୋଡ଼ (turning point) ଥିଲା । 'ଆଡ୍ରେ' (ଶ୍ରୀମତୀ ରୁକ୍ମିଣୀ ଦେବୀ ଅରୁଣ୍ଡେଲ) ଏହି ଅନୁଷ୍ଠାନକୁ ଭାରତର ଗୁଣୀ ଓ ଜ୍ଞାନୀ ଲୋକମାନଙ୍କୁ ବାଛି ବାଛି ଆଣୁଥିଲେ । ଏଥିରେ ପୁଅମାନେ ବେଶି ନ ଥିବାରୁ ଶ୍ରୀମତୀ ଅରୁଣ୍ଡେଲ ତାଙ୍କ ନୃତ୍ୟ ନାଟିକାରେ ୧୯୫୬ ମସିହାରୁ ମାୟାଧରଙ୍କୁ ଗ୍ରହଣ କରିଥିଲେ ଏବଂ ଭାରତର ପ୍ରତ୍ୟେକ ସହର ପରିଭ୍ରମଣ କରିଥିଲେ । ୧୯୫୯ରୁ ୧୯୬୨ ମସିହା ପର୍ଯ୍ୟନ୍ତ ମାୟାଧର କଳାବିକାଶ କେନ୍ଦ୍ରର ପ୍ରତ୍ୟେକ ନାଟିକାରେ ନାୟକ ଭୂମିକାରେ ଅଭିନୟ କରିଥିଲେ । ଯେଉଁ ସମସ୍ତ ଝିଅ ସେତେବେଳେ ଏହି ନାଟିକାମାନଙ୍କରେ ଅଂଶଗ୍ରହଣ କରିଥିଲେ ସେମାନଙ୍କ ମଧ୍ୟରେ ଶ୍ରୀମତୀ ଲକ୍ଷ୍ମୀପ୍ରିୟା ମହାପାତ୍ର, କାଦମ୍ବିନୀ ମିଶ୍ର, କୃଷ୍ଣପ୍ରିୟା ନନ୍ଦ, ସଞ୍ଜୁକ୍ତା ପାଣିଗ୍ରାହୀ ଏବଂ କୁଙ୍କୁମ ଦାସ ଅନ୍ତର୍ଭୁକ୍ତ । ୧୯୫୯ ମସିହାରେ ଲୋକନୃତ୍ୟରେ ଗବେଷଣା ପାଇଁ ଓଡ଼ିଶାର ଅନେକ ସ୍ଥାନ ମାୟାଧର ପରିଭ୍ରମଣ କରିଥିଲେ । ୧୯୬୦ ମସିହାରେ ପୁରୀରେ ଥିବା ଅନେକ ମାହାରୀମାନଙ୍କ ଘରକୁ ଯାଇ ସେମାନଙ୍କଠାରୁ ଅନେକ ନୃତ୍ୟ ସମ୍ପର୍କିତ ତଥ୍ୟ ସଂଗ୍ରହ କରିଥିଲେ ।

କଳାବିକାଶ କେନ୍ଦ୍ରରେ ଓ କେନ୍ଦ୍ର ବାହାରେ ମାୟାଧର ଅନେକ ନୃତ୍ୟନାଟିକା ପରିଚାଳନା କରିଥିଲେ । ୧୯୬୨ ମସିହାରେ ଟାଗୋରଜୟନ୍ତୀ ଉପଲକ୍ଷେ ଭୁବନେଶ୍ୱର ଆଦିବାସୀ ପଡ଼ିଆରେ ଅକ୍ଟୋବର ଦୁଇ ତାରିଖରେ କଳାବିକାଶ କେନ୍ଦ୍ର ପକ୍ଷରୁ ଗଙ୍ଗାଧରଙ୍କ 'ତପସ୍ୱିନୀ' ଉପରେ ଆଧାରିତ ଏକ ନୃତ୍ୟନାଟିକା ପ୍ରଦର୍ଶିତ ହୋଇଥିଲା । ଉତ୍ସବ ଶେଷରେ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଓଡ଼ିଶା ବାହାରୁ ଆସିଥିବା ଅଣଓଡ଼ିଆ ମନ୍ତ୍ରୀ ଓ ଏମ୍. ପି. ମାନଙ୍କୁ ମାୟାଧରଙ୍କ ପରିଚୟ ଦେଇ କହିଥିଲେ—"This Chalp is a very good Dancer in our State." ଅଦ୍ୟାବଧି ଏହି କଥାପଦକ ମାୟାଧରଙ୍କ ସ୍ମୃତିକୋଷରେ ଜୀବନ୍ତ ରହିଛି । ପରେ କଳାବିକାଶ କେନ୍ଦ୍ରରୁ ମାୟାଧର କେତେକ ବ୍ୟକ୍ତିଗତ କାରଣରୁ ଓହରି ଆସିଲେ ଏବଂ ୧୯୬୬ ମସିହା ଜୁଲାଇ ମାସରେ ଦିଲ୍ଲୀ ଚାଲିଆସିଲେ । ଏଠାରେ ସେ 'ଜୟନ୍ତିକା' ନାମରେ ଏକ ଅନୁଷ୍ଠାନ ଖୋଲି ନୃତ୍ୟ ଓ ସଙ୍ଗୀତର ଉନ୍ନତି ପାଇଁ ମନୋନିବେଶ କଲେ ।

ମାୟାଧରଙ୍କର ଛଅଗୋଟି ସନ୍ତାନ । ଗୋଟିଏ ଝିଅ ଓ ଦୁଇଟି ପୁଅ । ତାଙ୍କର କନ୍ୟା କଳାକୁ ବଞ୍ଚାଇ ରଖିବାକୁ ନିଜର ଉଦ୍ୟମ ଅବ୍ୟାହତ ରଖିଛନ୍ତି । ନାନା ଘାତ ପ୍ରତିଘାତ ମଧ୍ୟରେ ମାୟାଧରଙ୍କ ସଂଘର୍ଷମୟ ଜୀବନ ଓଡ଼ିଶୀ ନୃତ୍ୟର ଉନ୍ନତି ଦିଗରେ ହିଁ ମୁଖ୍ୟତଃ ବ୍ୟୟିତ ହୋଇଅଛି । ଅତୀତରେ ନାଚଗୀତ ପାଇଁ ବହୁତ କଷ୍ଟ ଓ ଯାତନା ସହିଥିବା 'ମାଇଅ' ଆଜ ସୁନାମଧନ୍ୟ ନୃତ୍ୟଗୁରୁ ମାୟାଧର ରାଉତରେ ପରିଣତ ହୋଇ ଯାଇଛନ୍ତି । ଫୁଲଟି ଅରଣ୍ୟର ଅନାମିକା ପରିବେଶରେ ଫୁଟି ଉଠିଲେ ମଧ୍ୟ ତାର ସୁବାସ ଯେପରି ସମଗ୍ର ଜଗତକୁ ମହକାଇ ଦିଏ, ସେହିପରି ମାୟାଧରଙ୍କର ନୃତ୍ୟ ସଙ୍ଗୀତ ସମ୍ପର୍କିତ ସାଂସ୍କୃତିକ ସୁବାସ ସମଗ୍ର ଭାରତକୁ ଆମୋଦିତ କରି ଦେଇଛି, ଉତ୍ଫୁଲ୍ଲିତ କରି ଦେଇଛି ।



# ଅଭିନୟ ଯାଦୁକର :
# ନିରଞ୍ଜନ ଶତପଥୀ

ଶ୍ରୀ ସୁଭାଷ ଚନ୍ଦ୍ର ମହାନ୍ତି

ଲୋକପ୍ରିୟ ଅଭିନେତା ନିରଞ୍ଜନ ଶତପଥୀଙ୍କ ଜନ୍ମ ଗଞ୍ଜାମ ଜିଲ୍ଲାର ଭଞ୍ଜନଗର ନିକଟବର୍ତ୍ତୀ ବାଉଁଶଲୁଣ୍ଡି ଗ୍ରାମରେ ୧୯୬୭ ମସିହା ଭାଦ୍ରବ ମାସ ଗଣେଶ ଚତୁର୍ଦ୍ଦଶୀ ଦିନ । ସେ ଥିଲେ ପିତା ମାତାଙ୍କର ଏକମାତ୍ର ସନ୍ତାନ । ପିତା ଲିଙ୍ଗରାଜ ଶତପଥୀ ଓ ମାତା ପଦ୍ମାବତୀ ତାଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । କିନ୍ତୁ ନିରଞ୍ଜନ ପିଲାଦିନେ ଖୁବ୍ ଦୁଷ୍ଟ ଥିଲେ । ଏଣେ ଭଲ ପାଠ ମଧ୍ୟ ପଢ଼ୁଥିଲେ । ଦୁଷ୍ଟାମୀ ପାଇଁ ଅବଶ୍ୟ ପିତା ଲିଙ୍ଗରାଜ ତାଙ୍କୁ ଶାସନ କରିବାକୁ ପଶ୍ଚାତ୍‌ପଦ ହେଉନଥିଲେ । ପୁଣି ସେ ଶ୍ରେଣୀରେ ପ୍ରଥମ ହେବାର ଶୁଣି ଆନନ୍ଦିତ ହେଉଥିଲେ ପିତା ଲିଙ୍ଗରାଜ ।

ଗୋଟିଏ ସମୟର କଥା; ସେତେବେଳକୁ ନିରଞ୍ଜନଙ୍କ ବୟସ ମୋଟେ ନଅ କି ଦଶ ବର୍ଷ । ତାଙ୍କ ଗ୍ରାମଠାରୁ ଦେଢ଼ ମାଇଲ ଦୂରରେ ଥିବା ଜଲୁଣ୍ଡି ଗାଁରେ ବାଳକୃଷ୍ଣ ମହାନ୍ତିଙ୍କ ଲେଖା 'ଅମର ବିକାଶ' ନାଟକ ମଞ୍ଚସ୍ଥ ହେଉଥାଏ । ସେ ତାଙ୍କ କକେଇଙ୍କ ସଙ୍ଗରେ ନାଟକ ଦେଖିବାକୁ ଯାଇଥାଆନ୍ତି । ଅଭିନୟରେ ଅଭିନେତାଙ୍କ ଯାଦୁକାଠି ଅଭିନୟରେ ଅଭିଭୂତ ନିରଞ୍ଜନ । ଗୋଟିଏ ଦୃଶ୍ୟରେ 'ଅମର'କୁ ହତ୍ୟା କରିବାପାଇଁ ରାଜା ଆଦେଶ ଦେଇଥାଆନ୍ତି । ବଡ଼ ବଡ଼ ନିଶ ରଖି, କପାଳରେ ବଡ଼ ସିନ୍ଦୂର ଟୋପା ଲଗାଇ, ହାତରେ ଛଅ ଇଞ୍ଚ ଚଉଡ଼ା ଖଣ୍ଡା ଧରି, ଘାତକ ଛିଡ଼ା ହୋଇଛି । ଅମରକୁ ହତ୍ୟା କରିବା ପାଇଁ ସେ ଉଦ୍ୟତ । ସଦ୍ଧଁ ସଦ୍ଧଁ

ଘାତକ ଭିଡ଼ନେଲା ଅମରକୁ ହତ୍ୟା କରିବାପାଇଁ । ନିଜକୁ ଆଉ ସଂଯତ କରିପାରିଲେ ନାହିଁ ନିରଞ୍ଜନ । ସେ ଥାଉଁ ଥାଉଁ ସତେ କ'ଣ ଜଣଙ୍କର ପ୍ରାଣ ଚାଲିଯିବ ଘାତକ ହାତରେ ! ହାତରେ ଗୋଟିଏ ପଥର ଧରି ସେ ମଞ୍ଚର ମଧ୍ୟଭାଗରେ ଛିଡ଼ା ହୋଇଗଲେ । ପିଲା ବୟସ । କ'ଣବା ସେ ବୁଝିଲେ । ସେ ଘାତକକୁ ଡରାଇବାକୁ କହି ଉଠିଲେ, "ଏ ଘାତକ ! ତୁ ଅମରକୁ ଛାଡ଼ ଦେ । ନ ହେଲେ ଏ ପଥର ପକାଇ ମୁଣ୍ଡ ଫଟାଇ ଦେବି ।" ଏହାକହି ପଥର ପକାଇବା ପାଇଁ ସେ ଉଦ୍ୟତ ହେଲେ । ଘାତକ ବିଚରା ଭୟରେ ଅମରକୁ ଛାଡ଼ ଗ୍ରିନ ରୁମକୁ ଦଉଡ଼ିଲା । ନାଟକ ବନ୍ଦ । ଏ ସବୁ ଘଟଣା ଘଟିଗଲା ଆଖି ପିଛୁଳାକେ । ଚାହିଁ ଚାହିଁ ଚାରିଆଡ଼େ କୋଳାହଳ । ଦର୍ଶକମାନେ ମଧ୍ୟ ଠିକ୍ ଭାବରେ ବୁଝିପାରିଲେ ନାହିଁ, ଏହା ଏକ ନାଟକର ଦୃଶ୍ୟ ଅବା ନିରଞ୍ଜନଙ୍କ ଅବାଞ୍ଛିତ ଦୁଷ୍ଟପଣିଆ । ନାଟୁଆଙ୍କ ଆଡ଼ୁ ତାଙ୍କୁ ଧର ଧର ବୋଲି ପାଟି ଶୁଭିଲା । ଏବେ ଦର୍ଶକଙ୍କ ନିଦ ଭାଙ୍ଗିଲା । ସେମାନେ ବୁଝିପାରିଲେ ପ୍ରକୃତ ଘଟଣାଟି କ'ଣ । ଦର୍ଶକଙ୍କ ମଧ୍ୟରୁ ଜଣେ ଉଠିଆସି ପଛପଟୁ ଧରିନେଲେ ନିରଞ୍ଜନଙ୍କୁ ଓ ତାଙ୍କ ହାତରୁ ପଥରଟି ଛଡ଼ାଇ ତଳେ ପକାଇ ଦେଲେ । ଏକପ୍ରକାର ତାଙ୍କୁ ଟେକି-ନେଲେ ବାହାରକୁ । କକେଇ ତାଙ୍କର ଦଉଡ଼ି ଆସିଲେ । ଚାପୁଡ଼ାଟାଏ ମାଇଲେ ନିରଞ୍ଜନ ଗାଲରେ । ନାଟକ ଦେଖା ସରିଲା ସେହି ଦୃଶ୍ୟରୁ । ଘରକୁ ଫେରିଲେ କକେଇଙ୍କ ହାତରେ । ପରେ ପରେ ଆଉଥରେ ସେହି ଦୃଶ୍ୟରୁ ନାଟକ ଆରମ୍ଭ ହେଲା । ବାଜା ବାଜିଲା ।

ଫେରିବା ବାଟରେ ନାଟକର ବେଗୁଲ ଦେ ଶୁଣି ସେ ଅସ୍ଥିର ହେଲେ । ଆଖି ଆଗରେ ଘାତକର ଦୃଶ୍ୟ ତାଙ୍କର ଭାସି ଉଠିଲା । ମନରେ ଦୁଃଖର ସୀମା ନାହିଁ । ଏଥର ଅମରକୁ ରକ୍ଷା କରିବାପାଇଁ କେହି ନାହାନ୍ତି । ଅମର ମରିବ ନିଶ୍ଚୟ । ସେହି ଦିନଠାରୁ ନାଟକ ପ୍ରତି ତାଙ୍କର ଆସକ୍ତି ବଢ଼ି ଚାଲିଲା । ଯେଉଁଠାରେ କହୁନା କହୁ ଅଭିନୟ ହୁଏ ସେ ଦେଖିବା ପାଇଁ ବାହାରି ପଡ଼ନ୍ତି । ଲୁଚିଛପି ଦଣ୍ଡନାଚ, କୃଷ୍ଣଲୀଳା, ରାଧାପ୍ରେମ ଲୀଳା, ରାମ ନାଟକ, ପ୍ରହ୍ଲାଦ ନାଟକ, ଦାସକାଠିଆ, ପାଲା ଇତ୍ୟାଦି ଅନେକ ଦେଖିଲେ । ପାଠ ନ ପଢ଼ି ଲୁଚିଲୁଚି ନାଟକ ଦେଖିବାରୁ ଗୋରୁ ଗାଈ ପରି ଅଜସ୍ର ମାଡ଼ ଗାଳି ସହିବାକୁ ପଡ଼ିଲା । ପିତା ମାତା

ଛାତ୍ର ହେଲେ କଣ ହେବ, ବାଜା ଶୁଣିଲେ ମନ ତାଙ୍କର ଅସ୍ଥିର ହୋଇ ଉଠେ । କେଉଁଥିରେ ମନ ଲାଗେ ନାହିଁ । ବାହାରି ପଡ଼ନ୍ତି ସେ ନାଟକ ଦେଖିବା ପାଇଁ ।

ଭଞ୍ଜନଗର ଅଞ୍ଚଳରେ ଭକ୍ତରାମ ପଟ୍ଟନାୟକ ଥିଲେ ନାଟକ ରାଜ୍ୟରେ ଏକାଙ୍ଗ ଚକ୍ରବର୍ତ୍ତୀ ନାଟକ ପରିଚାଳକ । ଘୁମୁସର ତାଲୁକରେ ନାଟକ ବିଷୟରେ 'ଅ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଜାଣିବା ଲୋକ ସେ ଜଣେ ମାତ୍ର । ଭକ୍ତ ରାମବାବୁ ନାଟ୍ୟକାର କାର୍ତ୍ତିକ ଘୋଷଙ୍କ ନାଟକ 'ମାତୃପୂଜା' ମଞ୍ଚସ୍ଥ କରିବାକୁ ଯାଉଥାନ୍ତି । ସେତେବେଳକୁ ନିରଞ୍ଜନଙ୍କ ବୟସ ଚଉଦ କି ପନ୍ଦର ବର୍ଷ । ସ୍କୁଲ ଛାତ୍ର ସେ । ତାଙ୍କୁ ଅଭିନୟ କରିବା ପାଇଁ ବାଛିଲେ ଭକ୍ତରାମ ପଟ୍ଟନାୟକ । ପ୍ରଥମ ଦୃଶ୍ୟରେ ଈଶ୍ୱର ପାର୍ବତୀ ବାହାରି ନାଟକ ଉପସ୍ଥାପନା କରିବେ । ନିରଞ୍ଜନ ପାର୍ବତୀ ଭୂମିକାରେ ଅଭିନୟ କରିବା ପାଇଁ ବଛାଯାଇ ଥାଆନ୍ତି । ନାରୀ ଭୂମିକାରେ ଅଭିନୟ କରିବାକୁ ହେଲେ ଅସମର୍ଥ । ଏଥିରେ ଭକ୍ତରାମ ପଟ୍ଟନାୟକ ଗମ୍ଭୀର ହୋଇ ଉଠିଲେ କିଛି ସମୟ ପାଇଁ । ଶେଷରେ ରାଗରେ କହିଲେ, "ଧେତ୍ ଏଟା ଗୋଟେ ଛୁଞ୍ଚା ଅନାଡ଼ୁଆ । ଏଟା ଗୋଟେ କି ଅଭିନୟ କରିବ" । ତା'ପରେ ବିଦା କରିଦେଲେ ନିରଞ୍ଜନଙ୍କୁ । ଅପମାନିତ ହୋଇ ଫେରିଲେ ସେ । କିନ୍ତୁ ଅଭିନୟ କରିବା ପାଇଁ ଦିନକୁ ଦିନ ଜିଦ୍‌ଖୋର ହୋ'ଇଉଠିଲେ ସେ । ସବୁ କଥା ଛାଡ଼ି ଅଭିନୟ ପ୍ରତି ଯତ୍ନବାନ ହେଲେ । ଯତ୍ନ କଲେ ରତ୍ନ ମିଳେ । ଚେଷ୍ଟା କଲେ ଅସାଧ୍ୟ ମଧ୍ୟ ସାଧନ ହୋଇପାରେ । ଏହାର ସତ୍ୟତା ପ୍ରତିପାଦନ କଲେ ନିରଞ୍ଜନ । ସମୟ କ୍ରମେ ଅଭିନୟ କ୍ଷେତ୍ରରେ ଦିନକୁ ଦିନ ତାଙ୍କର ସୁଖ୍ୟାତି ବଢ଼ି ବଢ଼ି ଚାଲିଲା ।

ହଠାତ୍ ଦିନେ ଭଞ୍ଜନଗର ରାଜରାସ୍ତାରେ ନିରଞ୍ଜନଙ୍କ ସଙ୍ଗେ ସାକ୍ଷାତ ହେଲା ଭକ୍ତରାମ ପଟ୍ଟନାୟକଙ୍କର । ଆନନ୍ଦରେ ସେ ତାଙ୍କୁ କୁଣ୍ଢାଇ ପକାଇଲେ । କହିଲେ, "ମୋତେ କ୍ଷମା କରିବ ପୁଅ । ମୁଁ ସେତେବେଳେ ମଣିକୁ ଚିହ୍ନି ପାରିଲି ନାହିଁ । ଅପମାନିତ କରିଥିଲି ।" ତାଙ୍କ ଆଖିରୁ ଦି'ଟୋପା ଅଶ୍ରୁ ଗଡ଼ି ଯାଇଥିଲା । ପଶ୍ଚାତାପରେ ଓ ଆନନ୍ଦରେ । ନିରଞ୍ଜନ ଅଭିନୟ କ୍ଷେତ୍ରରେ ଭଞ୍ଜନଗରର ଗର୍ବ ବୋଲି ତାଙ୍କ ଛାତି କୁଣ୍ଢେମୋଟ ହୋଇ ଯାଇଥିଲା ।

ଏହିପରି ଆନନ୍ଦରେ ଉତ୍ସାହିତ ହେଉଥିବା ସମୟରେ ଚରମ ପରୀକ୍ଷାରେ ଅବତୀର୍ଣ୍ଣ ହେଲେ ସେ । ତାଙ୍କର ପିତା ମୋଟେ ବୟାଳିଶ ବର୍ଷରେ ଇହଧାମ ତ୍ୟାଗ କଲେ । ସେତେବେଳେ ସେ ମାତ୍ର ନବମ ଶ୍ରେଣୀର ଛାତ୍ର । ମଧ୍ୟବିତ୍ତ ପରିବାରରେ ଜନ୍ମ ହୋଇଥିବାରୁ ପିଲାଦିନରୁ ତାଙ୍କର ଅର୍ଥାଭାବ ଲାଗି ରହିଲା । ଆଉ ପଢ଼ିବା ସମ୍ଭବପର ହେଲା ନାହିଁ । ପାଠରେ ଡୋରିବନ୍ଧା ହୋଇଗଲା । ପାଠ ପଢ଼ା ଛାଡ଼ି ସେ ଅଠର ବର୍ଷ ବୟସରେ ରଏଲ ଇଣ୍ଡିୟାନ ବିମାନ ବାହିନୀରେ (Rayal Indian Air force) ଯୋଗ ଦେଲେ ।

ସେ ଯେ କେବଳ ଭଲ ଅଭିନୟ କରି ପାରୁଥିଲେ ତାହା ନୁହେଁ, ତାହା ସଙ୍ଗେ ସଙ୍ଗେ ସେ ଭଲ ଗୀତ ମଧ୍ୟ ଗାଇ ପାରୁଥିଲେ । ସିନେମା ଇତ୍ୟାଦିର ଗୀତ ଶୁଣି ଶୁଣି ସେ ବେଶ ସୁନ୍ଦର ଭାବରେ ଗାଇ ପାରୁଥିଲେ । ପଙ୍କଜ ମଲ୍ଲିକ, ସାଇଗଲଙ୍କ ଗୀତ ପ୍ରତି ତାଙ୍କର ଆଗ୍ରହ ଥିଲା ସବୁଠାରୁ ଅଧିକ । ବାଙ୍ଗାଲୋରରେ ସେହି ସମୟରେ "ରତନ" ଫିଲମ୍ ଚାଲିଥାଏ, ସେ ଫିଲମ୍‌ର ସଙ୍ଗୀତ ନିର୍ଦ୍ଦେଶକ ଥାଆନ୍ତି ନୌସାଦ । ପ୍ରଥମଥର ପାଇଁ ଚଳଚିତ୍ର ସଙ୍ଗୀତରେ ଢୋଲକ ବ୍ୟବହାର କରି ଦର୍ଶକଙ୍କ ମନରେ ବେଶ୍ ଚମକ ସୃଷ୍ଟି କରିଥାଆନ୍ତି ସେ । ଫିଲମ୍‌ଟି ମଧ୍ୟ ଖୁବ୍ ସଫଳତା ଲାଭକରି ଲୋକମାନଙ୍କ ଦ୍ୱାରା ଆଦୃତ ହୋଇଥାଏ । ସେହି ଫିଲମ୍‌ର ଗୀତ ହେଉଛି "ସାବନ୍ କେ ବାଦଲୋ ଉନ୍‌ସେ ଯେ ଯା କହେ ।" ଏହି ଗୀତଟି ସହରର ଗଳି କନ୍ଦିରେ ଏବଂ ଘରେ ଘରେ ଆଦୃତ ହୋଇଥାଏ । ସେ ଗୀତଟିକୁ ମଧ୍ୟ ସୁନ୍ଦର ଭାବରେ କପିକରି ଗାଇବାରେ ଲାଗିଲେ ନିରଞ୍ଜନ । ରୟାଲ ଇଣ୍ଡିୟାନ ଏୟାର ଫୋର୍ସର ସମସ୍ତେ ନିରଞ୍ଜନଙ୍କ କଣ୍ଠରୁ ସେ ଗୀତଟି ଶୁଣି ଖୁବ୍ ପ୍ରଶଂସା କରିବାରେ ଲାଗିଲେ ତାଙ୍କୁ ।

ସେହି ସମୟର କଥା । ସେହି ପ୍ରଶିକ୍ଷଣ କେନ୍ଦ୍ରରେ ଗୋଟିଏ ସାଂସ୍କୃତିକ କାର୍ଯ୍ୟକ୍ରମ କରିବା ପାଇଁ ଠିକ୍ ହୋଇଥାଏ । ଏହା ଶିଖାଇବା ପାଇଁ ବାହାରୁ ଜଣେ ହିନ୍ଦିଭାଷୀ ଡାଇରେକ୍ଟର ଆସିଥାଆନ୍ତି । ନିରଞ୍ଜନଙ୍କ କଣ୍ଠରୁ "ସାବନ୍ କେ ବାଦଲୋ" ଗୀତଟି ଶୁଣି ଅତ୍ୟନ୍ତ ଖୁସିହେଲେ ସେ । ଶେଷରେ ସେ ଠିକ୍ କଲେ ଯେ, ନିରଞ୍ଜନ ଗୋଟିଏ ପଞ୍ଜାବୀ ଝିଅ ହୋଇ

ଏହି ଗୀତଟି ଗାଇବେ ଦର୍ଶକଙ୍କ ଆଗରେ । ସେତେବେଳେ ତାଙ୍କର ମନେ ପଡ଼ିଗଲା ଭକ୍ତରାମ ବାବୁଙ୍କ ଦ୍ୱାରା ଦତ୍ତ ପାଦଙ୍ଗ ଭୂମିକା ଉପାଖ୍ୟାନ । ସେ ଯା'ହେଉ ନାଟକର ମୋଡ଼ ତାଙ୍କୁ ଆକର୍ଷଣ କଲା । ସେ ରାଜି ହେଲେ । ଗୀତଟିକୁ ଭଲଭାବରେ ଅଭ୍ୟାସ କଲେ ସେ । ଗୀତ ସଙ୍ଗରେ କିପରି ଅଣ୍ଟାଭାଙ୍ଗି ଚାଲିବାକୁ ହେବ, କିପରି ରଙ୍ଗମଞ୍ଚ ଉପରେ ଗୋଟିଏ ପାଖରୁ ଆର ପାଖକୁ ଗୀତ ଗାଇ ଗାଇ ଚାଲି ଚାଲି ଯିବାକୁ ହେବ ଇତ୍ୟାଦି ଇତ୍ୟାଦି କଥା ଯଥାସାଧ୍ୟ ଚେଷ୍ଟାକରି ଶିଖିଲେ । ଏହାଛଡ଼ା ଗୀତ ଅର୍ଥାନୁ-ସାରେ କିପରି ଆଖି, ଭୂଲତା ନଚାଇବାକୁ ହେବ, ଆକାଶରେ ଥିବା ବାଦଲକୁ ହାତ ଦେଖାଇ କହିବାକୁ ହେବ ଇତ୍ୟାଦି ନାନା ବିଷୟରେ ସେ ଶିକ୍ଷା ଦେଇ ଚାଲିଲେ । କିନ୍ତୁ ନିରଞ୍ଜନଙ୍କୁ ସେପରି ଅଭିନୟ ଆଦୌ ଭଲଲାଗୁ ନ ଥାଏ । କାରଣ "ରତନ୍" ଫିଲମ୍‌ଟିକୁ ସେ ପ୍ରାୟ ଛଅ, ସାତ ଥର ଦେଖିଥାଆନ୍ତି । ତେଣୁ ସେ ଅଭିନୟ ଦିନ ନିଜର ବୁଦ୍ଧି ଓ କୌଶଳ ଦେଖାଇଲେ । ଫିଲମ୍‌ରେ ସେ ଗୀତ ଗାଇଲା ସମୟରେ ଯେପରି ପରିବେଷଣ ହୋଇଥିଲା ସେ ସେହିପରି ଅଭିନୟ କଲେ । ଅଭିନୟ ଶେଷରେ ଡାଇରେକ୍ଟର ମହାଶୟ ବଡ଼ ଖପ୍‌ପା । କହିଲେ, "କ୍ୟା ଏକ୍‌ଟିଙ୍ଗ କରିଦିଆ । ଏକଦମ୍ ମର୍ଡ଼'ର କରିଦିଆ ? ହାମ୍ କ୍ୟା ଶିଖାୟା, ଔର ତୁମ୍ କ୍ୟା କିୟା ?" କିନ୍ତୁ ସୁଖର କଥା ଯେ, ଶେଷରେ ପ୍ରଥମ ପୁରସ୍କାରର ଅଧିକାରୀ ହୋଇ ମେଡ଼େଲ ଓ କପ୍ ପାଇଲେ ନିରଞ୍ଜନ । କାରଣ, ତାଙ୍କ ଗୀତ ଓ ଅଭିନୟର ବିଶେଷ ଆକର୍ଷଣ ଥିଲା । ଫିଲମ ପରି ନିଚ୍ଛକ ଅଭିନୟ କରି ଓ ଗୀତ ଗାଇ ସେ ଦର୍ଶକଙ୍କୁ ମୁଗ୍‌ଧକରି ଦେଇଥିଲେ । ସମସ୍ତଙ୍କ ମୁହଁରେ ନିରଞ୍ଜନ ଓ ଡାଇରେକ୍ଟରଙ୍କର ଭୂୟସୀ ପ୍ରଶଂସା । ନିରଞ୍ଜନଙ୍କୁ ଶୁଣେଇ ଶୁଣେଇ ଡାଇରେକ୍ଟର ମହାଶୟ କହିଲେ, ହୁଆ, ଲେକିନ ପୁରା ଠିକ୍ ନେହିଁ ହୁଆ । ହାମ୍ ଯୋ ଶିଖାୟା ଥା ନା—ସ୍ତ୍ରେଡ଼ୋ, ଯୋ ହୋତିୟା ଓହି ସହି ।" ପ୍ରଶଂସା ଓ ପୁରସ୍କାର ନିରଞ୍ଜନଙ୍କୁ ଅଧିକ ଟାଣିଲା ଅଭିନୟ ଆଡ଼େ ।

ସେ ଏଥର ଫୋର୍ସରୁ ଫେରିଲେ । ଏଥର ପୋଲିସ ସର୍ଜେଣ୍ଟ ପାଇଁ ସେ ମନୋନୀତ ହେଲେ । କାରଣ ତାଙ୍କ ଟ୍ରେନିଂ କାଳ ମଧ୍ୟରେ ବନ୍ଧୁକ ଚାଳନା କରିବାରେ, ଖେଳ କସରତରେ ସେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ପୋଲ୍‌ଭଲ୍‌ଟ (Pole Voult), ପିସ୍ତଲ ସଟ୍ (Pistol shot)

ଇତ୍ୟାଦିରେ ସେ ସବୁଠାରୁ ଅଧିକ ପାରଦର୍ଶିତା ପ୍ରଦର୍ଶନ କରୁଥିଲେ
ସେ ପୋଲିସ ଟ୍ରେନିଙ୍ଗ କଲେଜ ଅନୁଗୁଳକୁ ଗଲେ ଟ୍ରେନିଙ୍ଗ୍ ପାଇଁ ।
ସେଠାରେ ହାବିଲଦାରମାନେ ଛାତ୍ରମାନଙ୍କୁ ଶିକ୍ଷା ଦେଉଥାନ୍ତି । ସେମାନଙ୍କ
ପୁରୁଣାକାଳିଆ ପୋଲିସିଆ ଶିକ୍ଷାରେ ସନ୍ତୁଷ୍ଟ ହେଲେ ନାହିଁ ନିରଞ୍ଜନ ।
ସେମାନଙ୍କ ସଙ୍ଗେ ନାନା କ୍ଷେତ୍ରରେ ବଚସା ହେଲା ନିରଞ୍ଜନଙ୍କର । ମାତ୍ର
ଗୋଟିଏ ସପ୍ତାହ ସେଠାରେ ରହି ସେ ଇସ୍ତଫା ଦେଲେ । ବଡ଼ ପାହ୍ୱାରେ
ଥିବା ଗୋରା ଅଫିସରମାନେ ତାଙ୍କୁ କେତେ ବୁଝାଇଲେ ଇସ୍ତଫାପତ୍ର
ଫେରାଇ ନେବା ପାଇଁ । କାରଣ ତାଙ୍କର ଏୟାର୍ ଫୋର୍ସର ରେକର୍ଡ ଖୁବ
ଉଚ୍ଚକୋଟୀର ଥିଲା । ହେଲେ ନିରଞ୍ଜନ ଅଟଳ ରହିଲେ ତାଙ୍କ ନିଷ୍ପତ୍ତିରେ ।
ଶେଷରେ ଫେରିଆସିଲେ ସେ ।

ସେଠାରୁ ଫେରି ଏବେ ସେ କ'ଣ କରିବେ ! ଶେଷରେ ବହୁ
ଚେଷ୍ଟା ପରେ ତାଙ୍କୁ ବ୍ରହ୍ମପୁରର ଜିଲା ପ୍ରଶିକ୍ଷଣ ଅଫିସରେ (Office of
the District Educational Officer) ବା ଆଜିର ଇନ୍‌ସପେକ୍ଟର
ଅଫ୍ ସ୍କୁଲସ୍ ଅଫିସ (Inspector of schools Office)ରେ ଗୋଟିଏ
କିରାଣୀ ଚାକିରି ମିଳିଗଲା । ତେଣୁ ଚାକିରିରେ ମନ-ନିବେଶ କଲେ ସେ ।
ଫଳରେ ଦିନକୁ ଦିନ ସେ ଉପର ହାକିମଙ୍କ ପ୍ରିୟପାତ୍ର ହେବାକୁ ଲାଗିଲେ ।
ସେତେବେଳେ ଡ଼.ଇ.ଓ (D.E.O) ଥାଆନ୍ତି ହରିହର ମିଶ୍ର ବାବୁ । ସଦ୍ୟ
(I.E.S) ଆଇ.ଇ.ଏସ ପାଶ ପରେ ସେହି ଅଫିସରେ ଆସି ଯୋଗ ଦେଇ
ଥାଆନ୍ତି । ସେ ନିରଞ୍ଜନଙ୍କ ବିଷୟରେ ନାନା କଥା ଜାଣି ନିଜ ପାଖକୁ
ଡକାଇଲେ । ଯୁଦ୍ଧ ବେଳରେ ସେ ଜାପାନ ଓ ସିଙ୍ଗାପୁର (ମାଲୟ)ରେ
ରହି କିପରି ସୈନ୍ୟମାନଙ୍କୁ ସାହାଯ୍ୟ କରୁଥିଲେ ସେ କଥା ନିରଞ୍ଜନଙ୍କଠାରୁ
ଶୁଣି ଅତ୍ୟନ୍ତ ଖୁସି ହେଉଥିଲେ ମିଶ୍ର ବାବୁ । ନିରଞ୍ଜନଙ୍କ କଥା କହିବା
ଷ୍ଟାଇଲ ଓ ସର୍ବୋପରି ଇଂରେଜ ଭାଷାରେ କଥା କହିବା ପ୍ରଣାଳୀ ତାଙ୍କୁ
ବେଶି ଆକୃଷ୍ଟ କରୁଥାଏ । ଦିନକୁ ଦିନ ମିଶ୍ର ବାବୁ ଅଧିକ ଭଲପାଇବାକୁ
ଲାଗିଲେ ନିରଞ୍ଜନ ଶତପଥୀଙ୍କୁ । ଫଳରେ ଏଥିରେ ଅନ୍ୟମାନଙ୍କର ଗାତ୍ର
ଦାହ ହେଲା । ଚପରାଶିଆ ହେଡ୍ କିରାଣୀଙ୍କଠାରୁ ଆରମ୍ଭ କରି ପ୍ରତ୍ୟେକ
କିରାଣୀ ତାଙ୍କୁ ପହିଲା ନମ୍ବର ଶତ୍ରୁ ବୋଲି ଭାବିଲେ ।

ସହକର୍ମୀମାନଙ୍କର ଏପରି ମନୋଭାବ ଦେଖି ନିରଞ୍ଜନ ଚିନ୍ତିତ
ହେଲେ । ତାଙ୍କୁ ଆଦୌ ଏ ସବୁ ଭଲ ଲାଗିଲା ନାହିଁ । ଶେଷରେ ସେ ଠିକ୍

ଭଲେ ଯେ, ସେ ନିଜେ ଦିନେ ହେଡ୍ କରଣୀଙ୍କ ଘରକୁ ଯିବେ ଓ ସେଠାରେ ତାଙ୍କ ସଙ୍ଗରେ କଥାବାର୍ତ୍ତା କରି ନିଜ ଭିତରେ ଥିବା ଭୁଲ ବୁଝାବଣାକୁ ଦୂର କରି ସୁ-ସମ୍ପର୍କ ସ୍ଥାପନ କରିବେ । ପାହାଡ଼ାଗ୍ରା ଅଫିସରେ ଅଶାନ୍ତି-କର ବାତାବରଣ ରହିବ ନାହିଁ । ଏପରି ଭାବି ଦିନେ ସକାଳେ ସେ ପହଞ୍ଚିଲେ ହେଡ୍ କରଣୀଙ୍କ ଘରେ । ଯୋଗ ଏପରି ଖରାପ ଯେ ସେ ଚେଷ୍ଟାକରି ମଧ୍ୟ ତାଙ୍କ ସଙ୍ଗେ ଭଲ ସମ୍ପର୍କ ରକ୍ଷା କରିପାରିଲେ ନାହିଁ । କାରଣଟି ହେଲା ଠିକ୍ ସେହି ସମୟରେ ତିନିଜଣ ଶିକ୍ଷକ ଆସି ତାଙ୍କ ଘରେ ପହଞ୍ଚିଲେ । ଜଣେ ଆଣିଛି କଖାରୁ, ଆଉଜଣେ କଟା ମାଛ ଓ ଅନ୍ୟଜଣେ ଫୁଲକୋବି, ଟମାଟୋ ଓ ମୂଳା । ସେମାନେ ନିରଞ୍ଜନଙ୍କ ସମ୍ମୁଖରେ ହେଡ଼ କରଣୀଙ୍କୁ ଦେଇ ଆଶୀର୍ବାଦ ଭିକ୍ଷାକଲେ । ଏଥିରେ ହେଡ଼ କରଣୀ ଅପ୍ରସ୍ତୁତ ହେଲେ ଓ ନିରଞ୍ଜନଙ୍କ ଉପସ୍ଥିତି ହେଡ଼ କରଣୀଙ୍କ ମୁଣ୍ଡରେ ବାଡ଼ିଭଳି କାମ କଲା । ବରଂ ତାରେ ସେ ନିରଞ୍ଜନଙ୍କୁ ଏଣ୍ଡୁଡେଣ୍ଡୁ କଥା କହି ଫେରାଇ ଦେଲେ । ଗଞ୍ଜାମୀ ଭାଷାରେ ମୃଦୁ ଗାଳିଦେଇ ଫେରିଆସିଲେ ସେ ।

ଏହି ସମୟରେ ଅନ୍ନପୂର୍ଣ୍ଣା ଥିଏଟର 'ଏ' ଗ୍ରୁପର ଅଭିନୟ ଚାଲିଥିଲା ବ୍ରହ୍ମପୁରରେ । ନେସନାଲ ହୋଟେଲ ଭିତରେ ଥିବା ପଡ଼ିଆରେ ମଞ୍ଚ ନିର୍ମିତ ହୋଇଥିଲା ଅନ୍ନପୂର୍ଣ୍ଣା ଥିଏଟର ଦଳର । ଏହିଠାରେ ଅନ୍ନପୂର୍ଣ୍ଣାର କଳାକାରମାନଙ୍କ ସଙ୍ଗେ ନିରଞ୍ଜନଙ୍କର ପରିଚୟ ହେଲା । ବନ୍ଧୁତା ମଧ୍ୟ ବଢ଼ିଲା । ତାଙ୍କ କଣ୍ଠରୁ ସେମାନେ ଅନେକ ଗୀତ ଶୁଣି ବଡ଼ ଖୁସି ହେଲେ । ରାତିରେ ସେମାନଙ୍କ ନାଟକ ପୁଣି ଦିନରେ ସେମାନଙ୍କ ରିହାରସଲ ମଧ୍ୟ ଦେଖିଲେ ସେ । ବିଶେଷ କରି ଶ୍ରୀଯୁକ୍ତ ନଟବର ସେଣ ଓ ଶ୍ରୀଯୁକ୍ତ ହରିହର ପଣ୍ଡା (ତାଙ୍କ ସଙ୍ଗୀତ ଶିକ୍ଷକ)ଙ୍କ ସଙ୍ଗେ ନିରଞ୍ଜନଙ୍କର ଘନିଷ୍ଠତା ବହୁ ପରିମାଣରେ ବଢ଼ିଗଲା । ଏମାନେ ଥିଏଟର ଦଳରେ ନିରଞ୍ଜନଙ୍କୁ ଉତ୍ସାହିତ କଲେ । ଥିଏଟରରେ ମିଶିବା ପାଇଁ ବାଉରୀବନ୍ଧୁ ବାବୁ ନିରଞ୍ଜନଙ୍କ ଅଭିନୟ କଥା ଜାଣି ଓ ରିହାରସଲ ବେଳେ ତାଙ୍କର ଅଭିନୟ ଦେଖି ଅନ୍ନପୂର୍ଣ୍ଣାରେ ମିଶାଇବାକୁ ଇଚ୍ଛା କଲେ । ସେଥିପାଇଁ ତାଙ୍କୁ ବାଉରୀବନ୍ଧୁ ମହାନ୍ତି ନାନାପ୍ରକାର ପ୍ରଲୋଭନ ଦେଖାଇଲେ । ତାଙ୍କୁ ବମ୍ବେ ଟ୍ରେନିଂ ପାଇଁ ପଠାଇଲେ । ପୃଥ୍ୱୀରାଜକାପୁର, କିଶୋର ସାହୁ ବା ଅଶୋକ କୁମାର କରିଦେବେ ବୋଲି କହିଲେ । ଏପରି କଥା ଶୁଣି ତାଙ୍କ ମନରେ

ସୁଖର ସ୍ୱପ୍ନ ଦେଖାଗଲା । ବମ୍ବେ ସହର ଆଖି ଆଗରେ ନାଚିଲା । କଥାଟା ନିରଞ୍ଜନଙ୍କ ମନ ପାଇଲା । ଏଣେ ମନରେ ଆଶାର ସଞ୍ଚାର କଲା । ବମ୍ବେର କେଉଁ ଫ୍ରେନଙ୍କ ସେଣ୍ଟରକୁ ସେ ଯିବେ ତାହା ବୁଝିବାର କ୍ଷମତା ନ ଥିଲା ତାଙ୍କର । ସେ ପଟେ ପୁଲସ୍ ଟ୍ରେନିଙ୍ଗ ଓ ଏପଟେ ହେଡ୍ କରଣୀଙ୍କ ଗଞ୍ଜାମୀ ଭାଷାରେ ଦେଇଥିବା ତାଲିମ ଅନୁଭୂତି ପୁଣି ଅନ୍ୟପଟେ ନାଟ୍ୟଆଙ୍କ ସ୍ୱାର୍ଥ କଥା । ସୁମଧୁର ବ୍ୟବହାର ଓ ସବୋପରି ବମ୍ବେର ସ୍ୱପ୍ନ, ନିଷ୍ପତ୍ତି କରିଦେଲା ଯେ ତାଙ୍କ ସ୍ଥାନ ଅଭିନୟ ଜଗତରେ । ଫଳରେ କରଣୀ ଗୃହକୁ ଛାଡ଼ି ଅନ୍ନପୂର୍ଣ୍ଣା 'ଏ'ରେ ଯୋଗଦେଲେ । ଏହି ଦଳ ସହିତ ସେ କଟକ ଆସିଲେ ।

କଳାକାରଙ୍କ ଜୀବନ ଅତୀତରେ ଅତ୍ୟନ୍ତ କଷ୍ଟ ଓ ଦୁଃଖଦାୟକ ଥିଲା । ବ୍ରହ୍ମପୁରରେ ଥିବା ସମୟରେ ସେ ସିଗାରେଟ ଖାଉଥିଲେ । ହେଲେ ନାଟପାର୍ଟିରେ ଦୁଇମାସ ରହଣି ମଧ୍ୟରେ ସିଗାରେଟ୍‌ତ ଦୂରରକଥା ବଡ଼ିଟାଏ ଟାଣିବା ମଧ୍ୟ ତାଙ୍କ ପକ୍ଷରେ ଦୁଷ୍ପ୍ରାପ୍ୟ ହୋଇ ପଡ଼ିଲା ।

"ଅନ୍ନ ଚିନ୍ତା ଚମତ୍କାର କାତରେ କବିତା କୁତଃ" ।

ଏଭଳି ଅବସ୍ଥାରେ ସେ ଆଉ ଅଭିନୟ ଅବା କରିବେ କ'ଣ ?

ବମ୍ବେ ଯାଇ ଟ୍ରେନିଙ୍ଗ ନେଇ ପୃଥ୍ୱୀରାଜ, ସୋରାଜ୍ ମୋଡ଼ି ହେବା ପରିବର୍ତ୍ତେ କଟକରେ ପହଞ୍ଚି ପ୍ରଥମେ ଶ୍ରୀ ମନୋରଞ୍ଜନ 'ଯୌବନ' ନାଟକରେ କନେଷ୍ଟବଲ ଭୂମିକାରେ ଅଭିନୟ କଲେ ଯେମିତି ସେଥିରେ ମାତ୍ର ଦୁଇ ପଦ କଥା କହି ଫେରି ଯାଇଥିଲେ ଗ୍ରୀନ୍ ରୁମ୍‌କୁ । ସେତିକିରେ ହୋଇଗଲା ତାଙ୍କର ଅଭିନୟର ଖଡ଼ିଛୁଆଁ । କିଛିଦିନ କଟକ ରହଣି ପରେ ଅନ୍ନପୂର୍ଣ୍ଣା ଥିଏଟର ବାହାରି ପଡ଼ିଲା ବାହାରେ ନାଟକ ମଞ୍ଚସ୍ଥ କରିବା ପାଇଁ । ପ୍ରଥମେ ପହଞ୍ଚିଲା ଅନୁଗୁଳଠାରେ । ପରିଚିତ ଅନୁଗୁଳ ଯେଉଁଠି ସର୍ଜେଣ୍ଟ ସାହେବ ଟ୍ରେନିଙ୍ଗ ଦେଉଥିଲେ ଓ ହାବିଲଦାରଙ୍କ ଅଫଯତ ଭାଷା ପାଇଁ ସେ ଟ୍ରେନିଙ୍ଗ ତାଙ୍କୁ ଛାଡ଼ିବାକୁ ପଡ଼ିଥିଲା । ଏଠାରେ ବହୁ ପରିଶ୍ରମ କରି ତାଙ୍କୁ ଅଭିନୟ ଶିଖାଇବାରେ ଲାଗିଥାଆନ୍ତି ମଞ୍ଚଗୁରୁ ନଟବର ସେଣ । ପୁରୁଣା ଓ ନୂଆ ଅଭିନେତାଙ୍କ ଭିତରେ ଅନ୍ତର୍ଦ୍ୱନ୍ଦ୍ୱ ଚରମ ସୀମାରେ ପହଞ୍ଚି ଥାଏ । ପୁରୁଣାମାନେ ସେମାନଙ୍କ ଆସନ ଛାଡ଼ିବାକୁ ନାରାଜ । ନୂଆ କଳାକାରମାନେ ଭଲ ଅଭିନୟ କରି ଦେଖାଇଦେବାକୁ ଉଦ୍‌ବାନ୍ତ ପ୍ରସ୍ତୁତ

ମୁଖ୍ୟ କାହାର କେତେ । ନୂତନ କଳାକାରମାନଙ୍କ ନେତା ଶ୍ରୀ ନଟବର ସେଣ । ତାଙ୍କର ନିରଞ୍ଜନଙ୍କ ପ୍ରତି ଥାଏ ଭ୍ରାତୃପ୍ରତିମ ସ୍ନେହ । ନିଃସ୍ୱାର୍ଥପର ଭାବରେ ତାଙ୍କୁ ଶିକ୍ଷାଦେବା ଓ ତାଙ୍କୁ ଜଣେ ଭଲ ଅଭିନେତା ରୂପେ ଦୁନିଆରେ ପରିଚିତ କରିବା ପାଇଁ ତାଙ୍କର ଯେଉଁ ଅଦମ୍ୟ ପ୍ରଚେଷ୍ଟା ତାହା ଅଦ୍ୟାବଧି ଭୁଲିପାରି ନାହାନ୍ତି ନିରଞ୍ଜନ । ତାହା ତାଙ୍କ ଜୀବନରେ ଅମ୍ଳାନ ସ୍ମୃତି । ଶ୍ରୀଯୁକ୍ତ କାର୍ତ୍ତିକ କୁମାର ଘୋଷଙ୍କ ପି. ଡବ୍ଲ୍ୟୁ. ଡ଼. ନାଟକରେ ତାଙ୍କୁ ଅଭିନୟ କରିବାକୁ ପଡ଼ିଥିଲା ବଳିତ ଫେରନ୍ତା ସରୋଜ ଭୂମିକାରେ । ଅନୁଗୁଳରେ ନାଟକଟି ପ୍ରଦର୍ଶିତ ହେଉଥାଏ । ସେ ନିଜେ ପୂର୍ବରୁ ଟ୍ରେନିଙ୍ଗ ନେଉଥିବା ପୋଲିସ କଲେଜର ଅଧକ୍ଷ ସାହେବମାନେ ଆସି ଥାଆନ୍ତି ନାଟକ ଦେଖିବା ପାଇଁ । ନିରଞ୍ଜନଙ୍କ ଅଭିନୟରେ ସେମାନେ ଏତେ ଅଭିଭୂତ ହୋଇ ଯାଇଥିଲେ ଯେ ସେମାନେ ତାଙ୍କ ସରଜେଣ୍ଟ ଟ୍ରେନିଙ୍ଗ କଥାକୁ ସ୍ମରଣ କରି କହି ଉଠିଲେ 'You were not cut out to be a bloody police officer. You are meant to be something much greater than that' ସେମାନଙ୍କର ଏପରି ମନ୍ତବ୍ୟ ତାଙ୍କ ପାଇଁ କେବଳ ଯେ ଏକପ୍ରକାର ସାର୍ଟିଫିକେଟ ଥିଲା ତାହା ନୁହେଁ ତାହା ଥିଲା ତାଙ୍କ ପାଇଁ ପ୍ରେରଣାର ବାର୍ତ୍ତା ।

ଇଂରେଜ ଜାତି କଳାକାରଙ୍କୁ ବହୁତ ଉଚ୍ଚ ଆସନ ଦିଅନ୍ତି । ତାଙ୍କ ଭଳି ଜଣେ ଅନଭିଜ୍ଞ ଅଭିନେତା ସର୍ବୋପରି ପ୍ରଥମ କରି ଅଭିନୟ କରୁଥିବା କଳାକାର ଯେ ପୋଲିସ ଅଫିସରଙ୍କଠାରୁ କାହିଁ କେତେ ଉଚ୍ଚରେ ବୋଲି ପ୍ରଶଂସା ପାଇବ—ଏହା କଳ୍ପନାତୀତ । ଅନ୍ୟ ଗୋଟିଏ ଘଟଣା, ସେ ସାଉରକେଲାରେ ଅଭିନୟ କରୁଥିବା ସମୟରେ ନାଟକ ଦେଖିବା ପାଇଁ କେତେକ ଜର୍ମାନୀ ଉଚ୍ଚପଦସ୍ଥ ଅଫିସର ସସ୍ତ୍ରୀକ ଆସିଥିଲେ । ସେମାନେ ନିରଞ୍ଜନଙ୍କ ଅଭିନୟରେ ଆକୃଷ୍ଟ ହୋଇ ତାଙ୍କୁ ଧନ୍ୟବାଦ ଜଣାଇବା ପାଇଁ ଗ୍ରୀନ ରୁମ ପର୍ଯ୍ୟନ୍ତ ଆଗେଇ ଆସିଥିଲେ । ସେତିକରେ ସେମାନେ ନୀରବ ରହି ନଥିଲେ । ତାଙ୍କ ସଙ୍ଗରେ ଡିନର ଖାଇବା ପାଇଁ ଆମନ୍ତ୍ରଣ କରିଥିଲେ । ସେମାନେ ବ୍ରାହ୍ମଣୀ କ୍ଲବରେ ତାଙ୍କୁ ଡିନର ଦେଇ ତାଙ୍କ ସଙ୍ଗରେ ଫଟୋ ଉଠାଇ ନିଜକୁ ଭାଗ୍ୟବାନ ବୋଲି ମନେ କରିଥିଲେ । କଳାକାର ସଙ୍ଗେ ଫଟୋ ଉଠାଇବା ଏକ ଗୌରବର କଥା ଥିଲା ସେମାନଙ୍କ ପାଇଁ । ସେମାନଙ୍କର ମନ୍ତବ୍ୟ ଏପର୍ଯ୍ୟନ୍ତ ନିରଞ୍ଜନ ଭୁଲିପାରି ନାହାନ୍ତି । ଏହାପରି

ନାନା ଉତ୍ସାହ ଓ ଉଦ୍ଦୀପନା ତାଙ୍କୁ ଆଗେଇ ନେଲା ଅଧିକ କଳାକୌଶଳ ପ୍ରଦର୍ଶନ କରିବାରେ ।

ଏହାପରେ ଅନୁଗୁଳଠୁ ସମ୍ବଲପୁର, ବରଗଡ଼, ବଲାଙ୍ଗୀର, ସୋନପୁର, ବଉଦ, ଦଶପଲ୍ଲା, ନୟାଗଡ଼, ପିପିଲି ଦେଇ ଥିଏଟର ଫେରିଲା ପୁରୀ । କାର୍ତ୍ତିକବାବୁ, ଲକ୍ଷ୍ମୀନାରାୟଣ ପାଢ଼ଙ୍କ ଭଳି ଉଚ୍ଚକୋଟୀର ଅଭିନେତାମାନଙ୍କ ଅନୁପସ୍ଥିତିରେ ସେମାନଙ୍କ ଅଭିନୟରେ ଅଂଶ ଗ୍ରହଣ କରି ବେଶ ପ୍ରତିଷ୍ଠା ଲାଭ କରିଥାଆନ୍ତି ନିରଞ୍ଜନ । ଏହା ହେଲା ୧୯୪୮ ଓ ୧୯୪୯ ମସିହାର କଥା ।

ଏହିପରି ଅନେକ ନାଟକରେ ଅଭିନୟ କଲାପରେ ଭଞ୍ଜକିଶୋର ପଟ୍ଟନାୟକଙ୍କ 'ଗରିବ' ନାଟକରେ ମ୍ୟାନେଜର ଭୂମିକା ଓ ଶ୍ରୀ ଲକ୍ଷ୍ମୀଧର ନାୟକଙ୍କ 'ଲାଲବହୁକ' ନାଟକରେ ମୁଖ୍ୟ ଭୂମିକା ବାଜୟ ଚରିତ୍ରରେ ଅଭିନୟ କଲାପରେ ସେ ଜଣେ ମୁଖ୍ୟ ଅଭିନେତା ରୂପେ ପରିଚିତ ହୋଇ ଥିଲେ । ପର ପର୍ଯ୍ୟାୟରେ ସେ ଅଭିନୟ କଲେ କ୍ୟାପ୍‌ଟେନ ଥୋମାସ ଭୂମିକାରେ । ତାହାଥିଲା ମନୋରଞ୍ଜନ ଦାଶଙ୍କ 'ବକ୍ସି ଜଗବନ୍ଧୁର' ଏକ ମୁଖ୍ୟ ଚରିତ୍ର । ଏହି ଅଭିନୟ ପାଇଁ ସମସ୍ତଙ୍କ ମୁହଁରେ ତାଙ୍କର, ପ୍ରଶଂସା ଗୁଞ୍ଜରି ଉଠିଲା । ପତ୍ରପତ୍ରିକାଠାରୁ ଆରମ୍ଭ କରି ସମସ୍ତେ ଏକମତ ହେଲେ ଯେ ନିରଞ୍ଜନ ଶତପଥୀ ଜଣେ ବଡ଼ କଳାକାର ।

୧୯୫୦ ମସିହାରେ ସେ ଅନ୍ନପୂର୍ଣ୍ଣା 'ଏ' ଛାଡ଼ି ଯୋଗ ଦେଲେ 'ବି' ଦଳରେ । ତାଙ୍କର ପରିଚାଳନାରେ ଭଞ୍ଜବାବୁଙ୍କ ନାଟକ "ଜୀବନ ଜୁଆ" ମଞ୍ଚସ୍ଥ କରାଗଲା କଟକ ନଗରରେ । ଉଚ୍ଚ ଶିକ୍ଷିତ ବ୍ୟକ୍ତିମାନେ ଏହାର ଭୂୟସୀ ପ୍ରଶଂସା କରି କହିଲେ, "ଏହା ଏକ ସଫଳ ନାଟକ" । କିନ୍ତୁ ନାଟକ ଦଳକୁ ଧନ କ୍ଷତି ସହିବାରେ ଲଗିଲା । 'ବି' ଗ୍ରୁପରେ ଯେତେ ନାଟକ ଅଭିନୀତ ହୋଇଥିଲା ସବୁ ଅଭିନୟ ଭିତରେ ରାମଚନ୍ଦ୍ର ମିଶ୍ରଙ୍କ ନାଟକ "ଘରସଂସାର"ର ମିଷ୍ଟର ବର୍ମା ଚରିତ୍ର ତାଙ୍କୁ ଅଭିନୟର ଶିର୍ଷରେ ପହଞ୍ଚାଇ ଦେଲା । ତେଣୁ ଏହିଠାରେ ସାମାନ୍ୟ ଅତେଇଶହ ଟଙ୍କା ପାଇଁ 'ବି' ଗ୍ରୁପର ସ୍ୱତ୍ୱାଧିକାରୀ ସ୍ୱର୍ଗତ ଲାଙ୍ଗରାଜ ନନ୍ଦଙ୍କ ସଙ୍ଗେ ଅପଡ଼ ହେଲା । ତେଣୁ ସେ ଅନ୍ନପୂର୍ଣ୍ଣା ଛାଡ଼ିଲେ । ତା'ପରେ ସେ "ରୂପଶ୍ରୀ ଥିଏଟର"ରେ ଯୋଗ ଦେଲେ । ତାହା ଥିଲା ଫିଲମ୍ କମ୍ପାନୀ ରୂପଭାରତୀର ଏକ ସହାୟକ ସଂସ୍ଥା । ରୂପଭାରତୀ ସଂସ୍ଥା ଭାଙ୍ଗିଯିବାରୁ ରୂପଶ୍ରୀ ଥିଏଟରରେ ପଡ଼ିଲା

ପୃଷ୍ଠଚ୍ଛେଦ । ରୂପଶ୍ରୀର କେତେଜଣ ପୁରୁଷ ଓ ନାରୀ କଳାକାର ଗୋଟିଏ ନାଟକ ଦଳ ଗଢ଼ିବା ପାଇଁ ମନସ୍ଥ କଲେ । ସେମାନଙ୍କ ମଧ୍ୟରେ ଥିଲେ ଶ୍ରୀ ଭୋଳାନାଥ ଦାଶ, ନଟବର ସେଣ, କୃଷ୍ଣଶଙ୍କ ମିଶ୍ର ଓ ନିରଞ୍ଜନ । ଦୁଇ ବର୍ଷକାଳ ପ୍ରାୟ ତିରିଶ ଜଣ ପୁଅ ଝିଅ ମିଶି ଦ୍ୱାର ଦ୍ୱାର ବୁଲି ଦର୍ଶ୍ରେ କରି, ଟୋକେ ପିଇ ପେଟ ପୋଷିଲେ, ଅଭିନୟକୁ ବଞ୍ଚାଇ ରଖିବାକୁ ଚେଷ୍ଟାକଲେ । ସେସମସ୍ତ କଷ୍ଟକର ଜୀବନ ତାଙ୍କ ଜୀବନର ଏକ କାହାଣୀ ହୋଇ ରହି ଯାଇଛି ।

ଶେଷରେ ଓଡ଼ିଶାର ବରପୁତ୍ର, ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ସାହାଯ୍ୟ କଲେ । ତାଙ୍କରି ସାହାଯ୍ୟରେ କଟକର ବାଙ୍କା ବଜାରରେ ଗଢ଼ି ଉଠିଲା 'ଜନତା' ରଙ୍ଗମଞ୍ଚ । ସେ ଜାଗାଟି ଥିଲା ସ୍ୱର୍ଗତ ଶୁଦ୍ଧିଲ ପାଲିତଙ୍କର । ମଞ୍ଚ ତିଆରି ପରେ ସମସ୍ତଙ୍କର ଚିନ୍ତାହେଲା ଅନ୍ୟ ସାମଗ୍ରୀ ପାଇଁ । କଟକର ଅନେକ ଉତ୍ସାହୀ ନାଟ୍ୟପ୍ରେମୀ ବନ୍ଧୁ ଆଗେଇ ଆସିଲେ ସେତେବେଳେ । ସେହିମାନଙ୍କ ସାହାଯ୍ୟ ପାଇ ମଞ୍ଚସ୍ଥ ହେଲା ଜନତା ରଙ୍ଗମଞ୍ଚରେ ପ୍ରଥମ ନାଟକ 'ଯୌତୁକ' । ଜନତା ରଙ୍ଗମଞ୍ଚ ସର୍ବଭାରତୀୟ ସ୍ତରରେ ପ୍ରତିଷ୍ଠା ଲାଭକଲା । 'ଯୌତୁକ' ପରେ ଚଉଠିଘାଟ, ଭରସା, ପରକଲମ, ନଷ୍ଟ ଉର୍ବଶୀ, ଝଞ୍ଜା, ଲୁହାଶିକୁଳି, ଆକାଂକ୍ଷା, ମଲ୍ଲଜହ୍ନ, ଉଠାପାଟେଣି, ଅଶୋକ ସ୍ତମ୍ଭ, କା ଆଗେ କହିବି, ଏମିତି ବି ହୁଏ, ଚନ୍ଦ୍ରଭାନୁ, ଯବାନ, ସାଧନା, କାହାର ଭୁଲ, ଯାଯାବର, ମନ୍ମଥନାଥ ବାବୁଙ୍କ 'ପ୍ରତିଭା', ରବୀନ୍ଦ୍ରନାଥ ଠାକୁରଙ୍କ 'କୁମାର ସଭା' ଓ ଏହିପରି ଆହୁରି ଅନେକ ନାଟକ ।

ଦିଲ୍ଲୀରେ ସର୍ବଭାରତୀୟ ନାଟକ ଉତ୍ସବରେ ଜନତା ରଙ୍ଗମଞ୍ଚ ଓଡ଼ିଶା ତରଫରୁ ଚାରିଥର ଯୋଗ ଦେଇ ଚାରୋଟି ନାଟକ ଯଥା-ପରକଲମ, ଉଠାପାଟେଣି, ଯବାନ, ସାଧନା ମଞ୍ଚସ୍ଥ କରି ଭୂୟସୀ ପ୍ରଶଂସା ଲାଭ କଲା । ଯାହାକି ଓଡ଼ିଶା ପାଇଁ ଥିଲା ଏକ ଗର୍ବ ଓ ଗୌରବର କଥା । ହେଲେ ଅଭାବ ଅନାଟନ ନିରଞ୍ଜନଙ୍କୁ ସବୁବେଳେ ବ୍ୟସ୍ତ କଲା । ପରିବାରର ଦୁଃଖ ଦୁର୍ଦ୍ଦଶା ଦିନକୁ ଦିନ ଅସହ୍ୟ ହୋଇପଡ଼ିଲା । ପରିବାର ଦୁଃଖ ସହି ନ ପାରି ସେ ତାଙ୍କ ଇଚ୍ଛା ବିରୁଦ୍ଧରେ ତ୍ୟାଗ କଲେ ଥିଏଟର ଦଳ । ଏତେଦିନର ମମତାକୁ କାଟିବା ପାଇଁ ଅନ୍ତର ମଧ୍ୟରେ ଅନେକ ଯନ୍ତ୍ରଣା ସହିବାକୁ ପଡ଼ିଥିଲା ତାଙ୍କୁ । ଅନେକ କାନ୍ଦିଥିଲେ ସେ । ଆଖିଲୁହ ଆଖିରେ ଶୁଖି

ଯାଇଥିଲା ମାରବରେ । ହେଲେ ତାଙ୍କ ପରିବାର ଓ ବନ୍ଧୁବାନ୍ଧବମାନେ ଏଥିରେ ଖୁସି ହୋଇଥିଲେ । ସେ ଜନତା ରଙ୍ଗମଞ୍ଚ ଛାଡ଼ିଲା ପରେ ରଙ୍ଗମଞ୍ଚର ଅବସ୍ଥା ଅତ୍ୟ ଶୋଚନୀୟ ହୋଇ ପଡ଼ିଲା ଓ ଶେଷରେ ବନ୍ଦ ହୋଇଗଲା । କଟକର ଅନ୍ନପୂର୍ଣ୍ଣା ଥିଏଟର ମଧ୍ୟ ପରେ ପରେ ବନ୍ଦ ହୋଇ ଗଲା । ଖାଲି କଟକ କାହିଁକି ସେହି ସମୟରେ ପ୍ରାୟ କଟକର ସମସ୍ତ ବ୍ୟବସାୟିକ ରଙ୍ଗମଞ୍ଚର ଶେଷ ଜବନିକା ପଡ଼ିଗଲା ।

ସେ ନାଟକ ରାଜ୍ୟର ଫାଟକ ଏକପ୍ରକାର ବନ୍ଦ କରି ବୀମା ରାଜ୍ୟର ସୀମା ଡେଇଁ ବୀମା କମ୍ପାନୀରେ ଯୋଗ ଦେଲେ । ଦୀର୍ଘ କୋଡ଼ିଏ ବର୍ଷକାଳ ବୀମାକମ୍ପାନୀରେ କାର୍ଯ୍ୟ କରି ଏବେ ଅବସର ନେଇଛନ୍ତି ସେ ।

ଏବେ ସେ ଅତୀତର ଅନୁଭୂତିକୁ ରୋମନ୍ଥନ କରୁଛନ୍ତି । ୧୯୪୭ ମସିହାରେ ପୋଲିସ ସର୍ଜେଣ୍ଟ ହୋଇଥିଲେ ବର୍ତ୍ତମାନ କ'ଣ ହୋଇ ଅବସର ନେଇଥାଆନ୍ତେ । କିନ୍ତୁ ଏବେ ଭଲଭାବରେ ବୁଝିପାରୁଛନ୍ତି ଯେ ବମ୍ବେ ଯାଇ ଅଶୋକ କୁମାର, ପୃଥ୍ୱୀରାଜକାପୁର ହେବାଠା ଅନ୍ନପୂର୍ଣ୍ଣା ଥିଏଟରରେ ସିଗାରେଟରୁ ବଡ଼କଠାରେ ରହିଯାଇଛି । ପିଲାଦିନେ ଘାତକକୁ ପଥରମାରି ଅମରବିଳାସ ନାଟକର ଅମରକୁ ରକ୍ଷା କରିବାକୁ ଉଦ୍ୟତ ହୋଇଥିବା ସେହି ନିରଞ୍ଜନ ଶତପଥୀ ଗାଲରେ, ପିଠିରେ ଗୁଆପୂଡ଼ା ଖାଇ ଘରକୁ ଫେରି ଆସିଲା ବେଳେ, ଥିଏଟରେ ନାଟର ବଗୁଲ୍ ବାଜ ଉଠିଚ, ଘାତକ ଖଣ୍ଡାର ଜୟହୋଇଛି । ନିରଞ୍ଜନର ପଥର ନୁହଁ, ଏବେବି ଓଡ଼ିଶାରେ ନାଟ, ଥିଏଟରରେ ବଗୁଲ, କନ୍‌ସେଟ, ତୋଲକ ବାଜୁଛି । କିନ୍ତୁ ନିରଞ୍ଜନ ଶତପଥୀ ମଞ୍ଚର ଖଳ ନାୟକ ଘରକୁ ଫେରି ଆସିଛନ୍ତି ପରାଜିତ ସୈନିକ ଭାବରେ ।

ନିରଞ୍ଜନ ଥିଏଟର ଜଗତରେ ଯେମିତି ଚଳଚଞ୍ଚଳ ଥିଲେ, ଠିକ୍ ସେମିତି ଚଳଚ୍ଚିତ୍ର ଜଗତରେ ମଧ୍ୟ । ଅନେକ ଚଳଚ୍ଚିତ୍ରରେ ସେ ଅଭିନୟ କରିଛନ୍ତି । ତଥାପି ଶ୍ରୀଜଗନ୍ନାଥ, ଘରବାହୁଡ଼ା, ଅଭିନେତ୍ରୀ, ଘରସଂସାର, ନଷ୍ଟନୀଡ଼ର ସାଥୀ, ଅଭିଳାଷ, ମହାସତୀ ସାବିତ୍ରୀ, ଅଲିଭାଦାଗ, ସହରୀ ବାବୁ, ଇତ୍ୟାଦି ଚଳଚ୍ଚିତ୍ର ଗୁଡ଼ିକରେ ତାଙ୍କ ଅଭିନୟ ଦର୍ଶକର ଦୃଷ୍ଟି ଆକର୍ଷଣ କରେ । ଅଭିନେତା ନିରଞ୍ଜନ ଚିରଦିନ ଓଡ଼ିଆ ଅଭିନୟ ଜଗତରେ ସ୍ମରଣୀୟ ଏବଂ ବନ୍ଦନୀୟ ।

